ପ୍ରକାଶକ : ମନୋଜକୁମାର ମହାପାତ୍ର
ଗ୍ରନ୍ଥମନ୍ଦିର
ବିନୋଦବିହାରୀ, କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ : ଅକ୍ଟୋବର, ୧୯୯୩

ମୁଦ୍ରଣ : ଷ୍ଟାର୍ ପ୍ରିଣ୍ଟିଂ ୱାର୍କସ୍
ଝୋଲା ସାହି, କଟକ-୧

ମୂଲ୍ୟ : ଟ ୧୦.୦୦

# ସର୍ବପଲ୍ଲୀ ରାଧାକୃଷ୍ଣନ୍

କାହାଣୀଟି ଏହିପରି—ଗାଁର ଅଳ୍ପ ଦୂରରେ ବଣଟିଏ । ତା'ରି ଭିତରେ ଜଣେ ସାଧୁଙ୍କର ଆଶ୍ରମ । ମନ୍ତ୍ର ଓ ପ୍ରାର୍ଥନା ସଙ୍ଗୀତରେ ବନସ୍ଥଳୀ ଉଚ୍ଛୁଳି-ଉଠେ । ଆଶ୍ରମର ଘଣ୍ଟାଧ୍ୱନିରେ ଲୋକମାନଙ୍କର ହୃଦୟ ଭକ୍ତିଗଦ୍‌ଗଦ୍ ହୋଇଉଠେ । ଯେ ଯେଉଁଠାରେ ଥା'ନ୍ତି ସମସ୍ତେ ଉଠି ସେଇ ଆଶ୍ରମ ଆଡ଼କୁ ଲକ୍ଷ୍ୟକରି ପ୍ରଣାମ କରନ୍ତି ।

ଗାଁ ଲୋକଙ୍କ ପ୍ରତି ସାଧୁଙ୍କର ମଧ୍ୟ ଆଶୀର୍ବାଦ ଥାଏ । ଭଲ, ମନ୍ଦ, ବିପଦ, ଆପଦରେ ସମସ୍ତେ ଗୁହାରି କରନ୍ତି ସେହି ସାଧୁଙ୍କୁ । ତାଙ୍କରି ଆଶୀର୍ବାଦରୁ ଲୋକମାନେ ମହା ମହା ବିପଦରୁ ମଧ୍ୟ ରକ୍ଷା ପାଇପାରନ୍ତି । ସତେ ଯେମିତି ସେ ଗାଁ ଲୋକଙ୍କର ଚଳନ୍ତି ଠାକୁର । ସାଧୁଲୋକଙ୍କର ଉପକାର ତଥା ହରିନାମ ଓ ଭଜନ କରି ସମସ୍ତ କଟାଉଥିଲେ । ଏଇପରି ବହୁତ ଦିନ କଟିଗଲା । ସାଧୁଙ୍କର ବାର୍ଦ୍ଧକ୍ୟ ଆସି ପହଞ୍ଚିଲା ।

ଦିନକର ଘଟଣା···ଘଣ୍ଟା ବାଜିଲା ନାହିଁ, ଶଙ୍ଖଶବ୍ଦ ଶୁଣାଗଲା ନାହିଁ । ସାହାନ୍ତି ପହରର ଘଣ୍ଟ, ଶଙ୍ଖ ଓ ପ୍ରାର୍ଥନାର ଧ୍ୱନି ଗାଁଲୋକେ ଶୁଣିବାକୁ ପାଇଲେ ନାହିଁ । କଥା କ'ଣ ? ସାଧୁଙ୍କ ଦେହ କ'ଣ ଭଲ ନାହିଁ ? ସାଧୁ କ'ଣ ଅଉ କେଉଁଆଡ଼େ ଚାଲିଗଲେ ?

ଲୋକମାନେ ଦଳ ଦଳ ହୋଇ ବାହାରିଲେ ଆଶ୍ରମକୁ । ଯାଇ ଦେଖନ୍ତି ତ ସାଧୁ ଗମ୍ଭୀର ଧ୍ୟାନରେ ବସିଛନ୍ତି । ଯେପରି କି ନିଶ୍ଚଳ ମୂର୍ତ୍ତିଟିଏ । ଲୋକେ ଭାବିଲେ ସାଧୁ ଧ୍ୟାନରେ ବସିଛନ୍ତି, ତାହା ଭାଙ୍ଗିଦେଲେ ପାପ ହେବ । କିନ୍ତୁ ଦେଖାଗଲା, ସାଧୁଙ୍କର ପ୍ରାଣବାୟୁ ଉଡ଼ିଯାଇଛି । ସେ ଅଛନ୍ତି ମହାସମାଧିରେ । ଲୋକେ ଏକଥା ଜାଣିଲାକ୍ଷଣି ତାଙ୍କର ମରଶରୀରକୁ ନେଇ ସତ୍କାର କଲେ ।

ମୃତ୍ୟୁ ପରେ ସାଧୁ ସ୍ୱର୍ଗକୁ ଗଲେ । ସେଠାରେ ଗୋଟିଏ ରତ୍ନଖଚିତ ସୁନା ମୁକୁଟ ତାଙ୍କୁ ପିନ୍ଧିବାକୁ ଦିଆଗଲା । ସେ ଦେଖିଲେ, ଅନେକ ମହାନ୍ ସାଧୁ ମଧ୍ୟ ମର୍ତ୍ତ୍ୟପୁର ଛାଡ଼ି ସ୍ୱର୍ଗପୁରକୁ ଆସିଛନ୍ତି । ସେମାନେ ସମସ୍ତେ ପିନ୍ଧିଛନ୍ତି କେବଳ ସୁନାର ମୁକୁଟ । ରତ୍ନ, ମଣି, ମାଣିକ୍ୟ ସେଥିରେ ଖଞ୍ଜାଯାଇନି । ଏହି ସାଧୁମାନେ ରତ୍ନଖଚିତ ମୁକୁଟ ପିନ୍ଧିଥିବା ସାଧୁଙ୍କୁ ଦେଖି ଈର୍ଷାରେ ଜଳିଗଲେ । ସେମାନେ ସମସ୍ତେ ଈଶ୍ୱରଙ୍କ ପାଖକୁ ଯାଇ ମନ-ଦୁଃଖରେ ଏହାର କାରଣ ପଚାରିଲେ । ସେ ଏକାକୀ କାହିଁକି ରତ୍ନଖଚିତ ମୁକୁଟ ପିନ୍ଧିବେ ଓ ଅନ୍ୟମାନେ ସମସ୍ତେ କେବଳ ସ୍ୱର୍ଣ୍ଣ ମୁକୁଟ ପିନ୍ଧିବେ—ଏହାହିଁ ଥିଲା ସେମାନଙ୍କର ପ୍ରଶ୍ନ । ଭଗବାନ ରତ୍ନ ସିଂହାସନରେ ବସି ହସି ହସି କହିଲେ—

"ତୁମେମାନେ ନିଷ୍ଠାପର ସାଧୁସନ୍ଥ । ସାରାଜୀବନ କେବଳ ଭଜନ କୀର୍ତ୍ତନ କରି କଟାଇଦେଇଛ । ତୁମକୁ ମାନବ ରୂପରେ ସଂସାରକୁ ପଠାଯାଇଥିଲା ମାନବର କର୍ତ୍ତବ୍ୟ ତୁଲାଇବା ପାଇଁ । ତୁମେମାନେ ସେ କର୍ତ୍ତବ୍ୟ ପାଳନ କରିନାହିଁ । ସେଥିପାଇଁ ତୁମମାନଙ୍କ ଭାଗରେ ପଡ଼ିଲା କେବଳ ସୁନାମୁକୁଟ । ସେ ସାଧୁ, ହରିନାମ ସହିତ ଜୀବର କଲ୍ୟାଣ ପାଇଁ ସାରାଜୀବନ ବିତାଇ-ଛନ୍ତି । ପରୋପକାର ଥିଲା ତାଙ୍କର ଶ୍ରେଷ୍ଠ ଧର୍ମ । ସେ ସେଥିପାଇଁ ରତ୍ନଖଚିତ ସ୍ୱର୍ଣ୍ଣ ମୁକୁଟର ଅଧିକାରୀ ହେଲେ । ସୃଷ୍ଟିର ଅସରନ୍ତି ଦୁଃଖୀ ଜନର ଲୋତକ ବିନ୍ଦୁ ତାଙ୍କପାଇଁ ରତ୍ନ ପାଲଟିଯାଇଛି । ତାଙ୍କ ମୁକୁଟର ରତ୍ନ, ଦୁଃଖୀର ଲୋତକବିନ୍ଦୁ ।" ଅନ୍ୟାନ୍ୟ ସାଧୁମାନେ ଏଥିରେ ଲଜ୍ଜିତ ହୋଇ ତଳକୁ ମୁହଁ ପୋତିଦେଲେ ।

ଏ ଗପଟିକୁ ସାଧାରଣ ଗପ ଭାବରେ ଗ୍ରହଣ କଲେ ଚଳିବନି । ଏହା ଗୋଟିଏ ଶିଶୁର ଜୀବନରେ ଏପରି ପ୍ରଭାବ ପକାଇଥିଲା ଯେ, ଶେଷରେ ସେ ଜଣେ ମହାନ୍ ବ୍ୟକ୍ତିରେ ପରିଣତ ହେଲେ । ତାଙ୍କର ସୁନାମ ସାରା ପୃଥିବୀରେ ଚହଟିଗଲା । ସେ ହେଲେ ଭାରତବର୍ଷର ଏକ ଉଜ୍ଜ୍ୱଳ ନକ୍ଷତ୍ର । ଦର୍ଶନଶାସ୍ତ୍ରରେ ସେ ଏତେ ପାରଦର୍ଶିତା ଲାଭକରିଥିଲେ ଯେ, ପୃଥିବୀର

ଦାର୍ଶନିକମାନଙ୍କ ଭିତରେ ସେ ହେଲେ ଅନ୍ୟତମ ଅଗ୍ରଗଣ୍ୟ ବ୍ୟକ୍ତି । ସେଇ ମହାନ୍ ଦାର୍ଶନିକ ହେଉଛନ୍ତି 'ସର୍ବପଲ୍ଲୀ ରାଧାକୃଷ୍ଣନ୍' । *

୧୮୮୮ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସ ପାଞ୍ଚ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଗାଁର ନାଁ ଥିଲା ତିରୁତାନି, ତାହା ଆଜିକାଲି ଆନ୍ଧ୍ର ପ୍ରଦେଶର ଚିତ୍ତୁର ଜିଲ୍ଲାର ଅନ୍ତର୍ଗତ । ରାଧାକୃଷ୍ଣଙ୍କ ପିତାଙ୍କ ନାମ ବୀରସ୍ୱାମୀ । ରାଧାକୃଷ୍ଣନ୍ ପାଞ୍ଚଟି ପିଲା ଭିତରେ ଥିଲେ ତାଙ୍କ ପିତାମାତାଙ୍କର ଦ୍ୱିତୀୟ ସନ୍ତାନ । ଗୋଟିଏ ମଧ୍ୟବିତ୍ତ ପରିବାରରେ ତାଙ୍କର ଜନ୍ମ । ସେ ପରିବାରର ସେପରି କିଛି ଖ୍ୟାତି ବା ସାମାଜିକ ପ୍ରତିପତ୍ତି ନଥିଲା । ପିଲାଦିନେ ସେ ବିଳାସବିଭବ ଭିତରେ ବଢ଼ିବାର ସୁଯୋଗ ପାଇନଥିଲେ । ସମ୍ପତ୍ତି ଓ ପଦମର୍ଯ୍ୟାଦା ଯେ ସବୁବେଳେ ମଣିଷକୁ ଉପରକୁ ଉଠାଇଥାଏ, ତାହା ବୁଝିବା ଭୁଲ୍ । ପଙ୍କ ଭିତରେ ପଦ୍ମ ଫୁଟେ । ଦାରିଦ୍ର୍ୟ ପଙ୍କରୁ ବହୁ ଜୀବନପଦ୍ମ କାଳେ କାଳେ ଫୁଟି ସଂସାରକୁ ମହନୀୟ ଓ ମହକିତ କରିଛି ।

ରାଧାକୃଷ୍ଣନ୍‌ଙ୍କ ପିତାମାତା ଧର୍ମପରାୟଣ ଥିଲେ । କୁଳାଚାର, ଜାତିଧର୍ମ ଓ ବ୍ରାହ୍ମଣର କର୍ତ୍ତବ୍ୟ ତୁଲାଇବା ଦିଗରେ ସେମାନଙ୍କର ଗଭୀର ନିଷ୍ଠା ଥିଲା । ପିତାମାତାଙ୍କର ନୈତିକ ପ୍ରଭାବ ଗଭୀର ଭାବରେ ରାଧାକୃଷ୍ଣନ୍‌ଙ୍କ ଉପରେ ପଡ଼ିଥିଲା । ବାଲ୍ୟଜୀବନରେ ସେ ବାରବର୍ଷ ପର୍ଯ୍ୟନ୍ତ ତିରୁତାନି ଓ ତିରୁପତିରେ କଟାଇଥିଲେ । ଦକ୍ଷିଣଭାରତର ଏ ଦୁଇଟି ହେଉଛି ପ୍ରଧାନ ତୀର୍ଥସ୍ଥାନ । ଏଠାରେ ଅନେକ ଖ୍ରୀଷ୍ଟିଆନ ମିସନାରୀ ବିଦ୍ୟାଳୟ ଅଛି । ରାଧାକୃଷ୍ଣନ୍‌ଙ୍କର ବାଲ୍ୟଶିକ୍ଷା ଏପରି ଏକ ପ୍ରାଥମିକ ବିଦ୍ୟାଳୟରେ ଆରମ୍ଭ ହୋଇଥିଲା । ସେ ଜଣେ ନୈଷ୍ଠିକ ହିନ୍ଦୁ ପରିବାରରୁ ଆସିଥିଲେ ମଧ୍ୟ ଅନ୍ୟାନ୍ୟ ଖ୍ରୀଷ୍ଟିଆନ ପିଲାମାନଙ୍କ ପରି ତାଙ୍କୁ ବାଇବେଲ ଅଧ୍ୟୟନ କରିବାକୁ ପଡ଼ୁଥିଲା । ରାଧାକୃଷ୍ଣନ୍‌ଙ୍କ ପିତାମାତା ଅତି ଉଦାରଚେତା ଥିଲେ । ସେମାନଙ୍କ ଭିତରେ କୌଣସି ପ୍ରକାର ସଙ୍କୀର୍ଣ୍ଣ ମନୋଭାବ ନଥିଲା । ସବୁ

---

* ତାଙ୍କର ପୂର୍ବଜମାନେ ସର୍ବପଲ୍ଲୀ ଗାଁର ଅଧିବାସୀ ଥିଲେ ବୋଲି ତାଙ୍କ ନାମ ପାଖରେ ଏହା ସୂଚିତ ହୋଇଛି ।

ଧର୍ମକୁ ସେ ସମାନ ଭାବରେ ଦେଖୁଥିଲେ । ଅନ୍ୟ ଧର୍ମପୁସ୍ତକ ପାଠକଲେ ଯେ ଜାତି ଚାଲିଯିବ କିମ୍ବା ମଣିଷ ଭ୍ରଷ୍ଟ ହୋଇଯିବ, ଏ ପ୍ରକାର ଧାରଣା ତାଙ୍କ ଭିତରେ ନଥିଲା । ରାଧାକୃଷ୍ଣନ୍ ଅତି ଆଗ୍ରହର ସହିତ ବାଇବେଲ ପାଠକରୁଥିଲେ ।

ଖ୍ରୀଷ୍ଟିଆନ୍ ଧର୍ମର ମୂଳତତ୍ତ୍ୱ ଜାଣିବା ଦିଗରେ ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା । ଜ୍ଞାନ ଆହରଣ କରିବାହିଁ ଜ୍ଞାନପିପାସୁ ବ୍ୟକ୍ତିର ଧର୍ମ । ନୂଆକଥା ଜାଣିବା ପାଇଁ ତାଙ୍କର ଯେଉଁ ଆଗ୍ରହ ଥିଲା, ସେଥିରୁ ଜଣାଯାଉଥିଲା ଯେ; ସେ ଭବିଷ୍ୟତରେ ଜଣେ ବିଜ୍ଞବ୍ୟକ୍ତି ହେବେ ।

ପଢୁଥିବା ସମୟରେ ପାଦ୍ରି ଶିକ୍ଷକମାନଙ୍କର କେତେକ ଆପତ୍ତିଜନକ ବ୍ୟବହାର ତାଙ୍କୁ ଆଦୌ ଭଲଲଗୁ ନଥିଲା । ସେମାନେ ଖ୍ରୀଷ୍ଟଧର୍ମ ଉପରେ ଆଲୋଚନା କରିବାବେଳେ ହିନ୍ଦୁଧର୍ମକୁ ନିର୍ମମଭାବରେ ସମାଲୋଚନା କରୁଥିଲେ । ସେମାନଙ୍କର ଶାଳୀନତାବିହୀନ ବ୍ୟବହାରରେ ରାଧାକୃଷ୍ଣନ୍ ଅତ୍ୟନ୍ତ ବ୍ୟଥିତ ହେଉଥିଲେ । ପାଦ୍ରି ଓ ଖ୍ରୀଷ୍ଟିଆନ୍ ଶିକ୍ଷକମାନଙ୍କର ଏତାଦୃଶ ବ୍ୟବହାର ଦେଖିଲେ ସ୍ୱତଃ ଉତ୍କଳଗୌରବ ମଧୁସୂଦନଙ୍କର ଏକ ଉକ୍ତି ମନେପଡ଼େ । ସେ ଥରେ କହିଥିଲେ, "ମୋ ମତରେ ଯୀଶୁଖ୍ରୀଷ୍ଟ ହିଁ ହେଉଛନ୍ତି ପୃଥିବୀର ଶ୍ରେଷ୍ଠ ଖ୍ରୀଷ୍ଟିଆନ୍ ଓ ଅନ୍ୟମାନେ ହେଉଛନ୍ତି କେବଳ ଚର୍ଚ୍ଚିଆନ୍ ।" କଥାଟା ବିଲ୍‌କୁଲ୍ ଠିକ୍ ।

ରାଧାକୃଷ୍ଣନ୍‌ଙ୍କର ବୟସ ସେତେବେଳକୁ ୧୩।୧୪ ବର୍ଷ । ଏ ବୟସରେ ସେ ଶିକ୍ଷକଙ୍କର ଅନ୍ୟାୟ ବିରୋଧରେ ପ୍ରତିବାଦ କରିବାର ଶକ୍ତି ବା କୋଉଠୁ ପାଇବେ ? ସେ ଭୟଭୀତ ଅବସ୍ଥାରେ ଥିଲେ ମଧ୍ୟ ମନ ତାଙ୍କର ବିଦ୍ରୋହୀ ହୋଇ ଉଠୁଥିଲା । ସମୟେ ସମୟେ ସେ ଭାବୁଥିଲେ 'ହିନ୍ଦୁମାନଙ୍କର ଆଚାର ବିଚାର କ'ଣ ଏତେ ହୀନ ! ସେମାନଙ୍କର ପ୍ରଥା କ'ଣ ଏତେ ନୀଚ ! ଯେଉଁ ଧର୍ମ ଏତେ ସନାତନ ଓ ପ୍ରାଚୀନ, ତାହା କ'ଣ କଳଙ୍କର ବାଲିଗଦା ଉପରେ ତା' ଆସନ ଜମେଇଚି ? ଶିକ୍ଷକ ହିନ୍ଦୁଧର୍ମକୁ ଯେ ଏତେ ନିନ୍ଦା କରୁଛନ୍ତି ତା' କ'ଣ ସତ ? ଶିଶୁମନ ବୁଝେନା । ପ୍ରକୃତ

ତଥ୍ୟ ଜାଣିବା ପାଇଁ ମନ ତାଙ୍କର ବ୍ୟାକୁଳ ହୋଇଉଠିଲା । ସେ ପିଲାଟି ଦିନରୁ ହିନ୍ଦୁତତ୍ତ୍ୱ ଆଲୋଚନା କରି ନୂଆ ଜ୍ଞାନଲାଭ କରିବାପାଇଁ ଲାଗି-ପଡ଼ିଲେ । ଶିକ୍ଷକଙ୍କ ଭର୍ତ୍ସନା ହିଁ ହେଲା ତାଙ୍କପାଇଁ ଭାବୀ ଜୀବନର ପାଥେୟ । ସେ ନିଜର ଆତ୍ମଶକ୍ତି ଉପରେ ବିଶ୍ୱାସ ରଖି ବହୁ ଧର୍ମଶାସ୍ତ୍ର ପଢ଼ିଲେ । ତା' ଉପରେ ବହୁ ଆଲୋଚନା ଓ ଅନୁଶୀଳନ କଲେ ।

ରାଧାକୃଷ୍ଣନ୍ ଥିଲେ ଭାରି ଚିନ୍ତାଶୀଳ । ତାଙ୍କର ଚିନ୍ତାଶୀଳତା ଓ କର୍ତ୍ତବ୍ୟରେ ଲୀନ ହୋଇଯିବାର ସ୍ୱଭାବରୁ ଜଣାପଡ଼ୁଥିଲା ଯେ; ସେ ଭବିଷ୍ୟତରେ ଜଣେ ଉଚ୍ଚକୋଟିର ଦାର୍ଶନିକ ହେବେ । ତାଙ୍କ ପାଖରେ କୌଣସି ସମସ୍ୟା ପହଞ୍ଚିଲେ ସେ ସ୍ଥିର ଭାବରେ ତା'ର ବିଚାର କରୁଥିଲେ । ଏଥିପାଇଁ ସୂକ୍ଷ୍ମ ଚିନ୍ତାର ଆଶ୍ରୟ ନେଉଥିଲେ । ପିଲାଟିଦିନରୁ ଏତେ ଗାମ୍ଭୀର୍ଯ୍ୟ, ଏତେ ଚିନ୍ତାଶୀଳତା, ଏତେ ବିଚାରବୁଦ୍ଧି ତାଙ୍କ ଭବିଷ୍ୟତରେ ଏକ ଦାର୍ଶନିକ ବ୍ୟତୀତ ଆଉ କ'ଣ କରିଥାନ୍ତା !

ଜୀବନରେ ନିର୍ଜନତା ହିଁ ଥିଲା ତାଙ୍କର ପ୍ରିୟ ସାଥୀ । ସେ ବନ୍ଧୁ ଗହଣରେ ବସି ଅବାନ୍ତର ଆଲୋଚନାରେ ସମସ୍ତ ବ୍ୟସ୍ତ କରୁନଥିଲେ । ସେ ଥିଲେ ସଦାସର୍ବଦା ଚିନ୍ତାଶୀଳ । ତାଙ୍କ ମନ ଭାବନାରାଜ୍ୟରେ ପ୍ରଜାପତି ପରି ଗୋଟିଏ ଭାବରୁ ଅନ୍ୟ ଭାବ ମଧ୍ୟରେ ସର୍ବଦା ଘୂରି ବୁଲୁଥିଲା । ଅତି କୋମଳ ବୟସରୁ ସେ ମଧ୍ୟ ଅନୁଭବ କରୁଥିଲେ ଯେ, ଏହି ବାହ୍ୟଜଗତ ଅପେକ୍ଷା ଆଉ ଗୋଟିଏ ଅଦୃଶ୍ୟ ଜଗତ ଅଛି । ଆମେ ସେ ଜଗତକୁ ଦେଖି ନ ପାରିଲେ ବି ମନ ମଧ୍ୟରେ ଅନୁଭବ କରିପାରିବା । ଏ ପ୍ରକାର ସୂକ୍ଷ୍ମଚିନ୍ତା ତାଙ୍କ ମନକୁ ସଦାସର୍ବଦା ଆଲୋଡ଼ନ କରୁଥିଲା । ତାଙ୍କର ଅନ୍ତଃପ୍ରକୃତି, ବାହ୍ୟପ୍ରକୃତି ଉପରେ ଗଭୀର ପ୍ରଭାବ ପକାଉଥିଲା ।

ରାଧାକୃଷ୍ଣନ୍ ଥିଲେ ଅତ୍ୟନ୍ତ ପୁସ୍ତକପ୍ରିୟ ଓ ପୁସ୍ତକପଠନ ଥିଲା ତାଙ୍କର ସବୁଠାରୁ ବଳି ଆନନ୍ଦପୂର୍ଣ୍ଣ ଅଭ୍ୟାସ । ପୁସ୍ତକ ଥିଲା ତାଙ୍କର ଚିରସାଥୀ, ପଥପ୍ରଦର୍ଶକ । ସେ ଭଲଭାବେ ଜାଣିଥିଲେ ଯେ; ପୁସ୍ତକଗୁଡ଼ିକ ହେଉଛନ୍ତି ମଣିଷର ସୂକ୍ଷ୍ମ ଚିନ୍ତାର ଆଲୋକମୟ ପ୍ରକାଶ । ମଣିଷ ଭିତରେ ଯେତେ

ଦୋଷ ଥିଲେ ମଧ୍ୟ ତା' ପୁସ୍ତକରେ ସବୁଠାରୁ ବଳି ଉଚ୍ଚ ଚରିତ୍ରର ସନ୍ଧାନ ଥାଏ । ଗୋଟିଏ ସୁ-ପୁସ୍ତକ ମଣିଷର ଶ୍ରେଷ୍ଠ ବନ୍ଧୁପରି । ମଣିଷ କେବଳ ସୁଖର ସାଥୀ, ଦୁଃଖ-ବିପଦର ନୁହେଁ । ପୁସ୍ତକ କିନ୍ତୁ ଦୁଃଖ ଓ ସୁଖ ଉଭୟର ସାଥୀ । ତାହା ସୁଖବେଳେ ଆନନ୍ଦକୁ ଘନୀଭୂତ କରେ ଓ ଦୁଃଖରେ ତୀବ୍ରତାକୁ କମାଇଦିଏ । ମଣିଷକୁ ତା'ର ବନ୍ଧୁ ପରିଜନ ଓ ପରିବାର ପ୍ରତାରଣା କରିପାରନ୍ତି । ଏକମାତ୍ର ପୁସ୍ତକ ପ୍ରତାରଣା ବଦଳରେ ପ୍ରେମ ଓ ଶାନ୍ତି ପ୍ରଦାନ କରେ ।

## ଲାଜକୁଳାଙ୍କୁ କିଏ ଜିଣେ

ରାଧାକୃଷ୍ଣନ୍ ଥିଲେ ପିଲଟି ଦିନରୁ ଭାରି ଲାଜକୁଳା । ସତେ ଯେମିତି ତାଙ୍କ ନାଁର ଏଇଟା ହେଉଛି ଏକ ବିଶେଷ ଗୁଣ । ରାଧାଙ୍କର ଲାଜପଣ ଓ କୃଷ୍ଣଙ୍କର ରାଜପଣ ଏ ଦୁଇଟାର ସେ ଥିଲେ ସତେ ଯେପରି ଅଧିକାରୀ । ଏ ଉଭୟ ଗୁଣର ସମାହାର ତାଙ୍କରି ଭିତରେ ଥିଲା । ଗମ୍ଭୀର ପ୍ରକୃତି ସହିତ ଲାଜକୁଳା ଢଙ୍ଗ ତାଙ୍କୁ ଅନ୍ୟମାନଙ୍କଠାରୁ ଅଲଗା କରୁଥିଲା । ଯେ କୌଣସି ଲୋକ ସାଥିରେ ମିଶିବାକୁ ତାଙ୍କର ଭାରି ଭୟ । କେବଳ ଅତି ପରିଚିତ ଲୋକ ସହିତ ସେ ମିଶୁଥିଲେ । ତାଙ୍କର ବ୍ୟବହାର ଭାରି କୋମଳ ଥିଲା । ସେ ଥିଲେ ଶାନ୍ତପ୍ରକୃତିର ପିଲା । ଡରକୁଳାପଣ ପାଇଁ ଅନ୍ୟର ସମ୍ପର୍କରେ ନ ଆସିବାଦ୍ୱାରା ତାଙ୍କର ବି ଏକପ୍ରକାର ଲାଭ ହେଉଥିଲା, ଅନ୍ୟମାନେ ତାଙ୍କୁ ହଠାତ୍ କଳନା କରିପାରୁ ନଥିଲେ । ତାଙ୍କ ଭିତର ପ୍ରକୃତିଟା କ'ଣ ତାହା ଜାଣିବାପାଇଁ ଅନ୍ୟମାନଙ୍କ ପକ୍ଷରେ କଷ୍ଟକର ଥିଲା । ସମସ୍ତଙ୍କର ଧାରଣା, ରାଧାକୃଷ୍ଣନ୍ ଯେପରି ଶାନ୍ତ, ସେପରି ଦୃଢ଼ମନା । କିନ୍ତୁ ସେ ନିଜେ ବୁଝୁଥିଲେ ଯେ, ସେ ହେଉଛନ୍ତି ସେମାନଙ୍କ ଧାରଣାର ଠିକ୍ ଓଲଟା—ବଡ଼ ଅଭିମାନୀ । ତାଙ୍କର ଦୃଢ଼ତାକୁ ସେ ସବୁବେଳେ ଗୋପନ କରି ରଖୁଥିଲେ ।

## ବିଶ୍ୱବିଦ୍ୟାଳୟ ଜୀବନ

ପ୍ରଥମରୁ ତ କୁହାଯାଇଛି, ଯେ ତାଙ୍କର ବାଲ୍ୟଶିକ୍ଷା ଖ୍ରୀଷ୍ଟିୟାନ୍ ସ୍କୁଲରେ ଆରମ୍ଭ କରିଥିଲେ । ଏବେ ବିଶ୍ୱବିଦ୍ୟାଳୟ ଜୀବନ ମଧ୍ୟ ଆରମ୍ଭ ହେଲା ସେଇ ଖ୍ରୀଷ୍ଟିୟାନ୍ କଲେଜରେ । ସେ ହେଲେ ମାନ୍ଦ୍ରାଜ ଖ୍ରୀଷ୍ଟିୟାନ୍ କଲେଜର ଜଣେ ଛାତ୍ର । ସେଠାରେ ଖ୍ରୀଷ୍ଟିୟାନ୍ ଅଧ୍ୟାପକମାନଙ୍କର ହିନ୍ଦୁଧର୍ମ ବିଶ୍ୱାସ ପ୍ରତି ଉତ୍କଟ ଅସହିଷ୍ଣୁତା ଥିଲା । ସେମାନେ ହିନ୍ଦୁ ଆଚ୍ଛର ବିଚାର ନୀତି ଓ ଆଦର୍ଶର ବହୁ କଟୁ ସମାଲୋଚନା କରୁଥିଲେ । ଏହା ରାଧାକୃଷ୍ଣନ୍‌ଙ୍କ ପ୍ରାଣରେ ଗଭୀର ବେଦନା ସୃଷ୍ଟି କରୁଥିଲା । ସେ ଥିଲେ ନିଷ୍ଠାପର ହିନ୍ଦୁ ପରିବାରର ସନ୍ତାନ । ନିଜ ଧର୍ମବିଶ୍ୱାସ ଉପରେ ଏ ପ୍ରକାର ଆକ୍ରମଣକୁ ସେ ପସନ୍ଦ କରୁନଥିଲେ । ତାଙ୍କ ମନରେ ବିଦ୍ରୋହ-ଭାବ ସୃଷ୍ଟି ହୋଇଥିଲା । ପ୍ରତିଶୋଧ ନେବାର ମନୋଭାବ ପରିହାର କରି ସେ ବରଂ ଏହାର ସତ୍ୟାସତ୍ୟ ନିର୍ଣ୍ଣୟ କରିବା ପାଇଁ ବ୍ୟାକୁଳ ହୋଇ ଉଠିଲେ ।

ଦାର୍ଶନିକ ଓ ବୈଜ୍ଞାନିକମାନେ ଅପରର ସମାଲୋଚନାରୁ ବହୁଭାବରେ ଲାଭ ଉଠାଇଥାଆନ୍ତି । ସାଧାରଣ ଲୋକ, ସମାଲୋଚକକୁ ଶତ୍ରୁ ଦୃଷ୍ଟିରେ ଦେଖିଲାବେଳେ ଏମାନେ ଅପରିହାର୍ଯ୍ୟ ବନ୍ଧୁ ହିସାବରେ ଗ୍ରହଣ କରନ୍ତି । ସମାଲୋଚକ ବରଂ ସମ୍ମାନର ପାତ୍ର । ସାଧାରଣ ବ୍ୟକ୍ତି ଓ ଦାର୍ଶନିକ ଭିତରେ ଏଇ ହେଉଚି ପ୍ରଭେଦ ।

ହିନ୍ଦୁ ଧର୍ମବିଶ୍ୱାସ, ସଂସ୍କୃତି, ନୀତି, ପ୍ରଥା ଓ ଆଦର୍ଶ ଭିତରେ ପ୍ରକୃତରେ କେତେ ପରିମାଣରେ ସତ୍ୟ ଓ ଜୀବନ ରହିଛି ତାହା ସେ ଜାଣିବା ପାଇଁ ତତ୍ପର ହୋଇଉଠିଲେ । ଭଲ ଓ ଭେଲ, ସତ୍ୟ ଓ ଅସତ୍ୟ, ନୀତି ଓ ଅନୀତି, ବିଶ୍ୱାସ ଆଉ ଅନ୍ଧବିଶ୍ୱାସ ସନାତନ ଧର୍ମକୁ କେତେଦୂର ଓ କିପରି ଭାବରେ ପ୍ରଭାବିତ କରିଛି ଜାଣିବା ପାଇଁ ସେ ତନ୍ନ ତନ୍ନ କରି ବହୁ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ବି ଏ. ଓ ଏମ୍. ଏ.

ଦର୍ଶନ ପାଠ୍ୟକ୍ରମ ଭିତରେ ଭାରତୀୟ ଚିନ୍ତାଧାରା ଓ ଧର୍ମ ବିଷୟରେ ବିଶେଷ କିଛି ପାଠ୍ୟ ବିଷୟ ନଥିଲା । ବର୍ତ୍ତମାନ ମଧ୍ୟ ଭାରତୀୟ ବିଶ୍ୱବିଦ୍ୟା-ଳୟମାନଙ୍କରେ ଭାରତୀୟ ଦର୍ଶନ ବିଷୟରେ ବିଶେଷ କିଛି ଉଲ୍ଲେଖଯୋଗ୍ୟ ବିଷୟ ପାଠ୍ୟକ୍ରମର ଅନ୍ତର୍ଗତ କରାଯାଇନାହିଁ ।

୧୯୦୯ରେ ସେ ବି. ଏ. ଡିଗ୍ରୀ ହାସଲ କରିସାରିବା ପରେ ଏମ୍. ଏ. ପରୀକ୍ଷାକୁ ସାହାଯ୍ୟ କରିଭଳି ସେ ଗୋଟିଏ ସନ୍ଦର୍ଭ ପ୍ରସ୍ତୁତ କଲେ । ତାଙ୍କର ଲକ୍ଷ୍ୟ ଥିଲା, ଯେଉଁମାନେ ସମାଲୋଚନା କରୁଛନ୍ତି ଯେ, ବେଦା-ନ୍ତରେ ନୈତିକତାର କିଛି ସ୍ଥାନ ନାହିଁ, ସେମାନଙ୍କ ସମାଲୋଚନାର ଉତ୍ତର ରୂପେ ଏହା କାମ କରିବ । ଗଭୀର ନିଷ୍ଠା ଓ ଯତ୍ନ ସହକାରେ ସେ ଏହି ସନ୍ଦର୍ଭଟିକୁ ପ୍ରସ୍ତୁତ କରିଥିଲେ । ଏଥିପାଇଁ ତାଙ୍କୁ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା ଓ ସେ ବହୁ ଶାସ୍ତ୍ର ଅଧ୍ୟୟନ କରିଥିଲେ । ସେସବୁ ମନ୍ଥନ କରି ତା' ଭିତରୁ ସତ୍ୟ ଆବିଷ୍କାର କରିବା କି କଠିନ କାର୍ଯ୍ୟ ତାହା ସହଜରେ ଅନୁମାନ କରାଯାଇପାରେ ।

ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜରେ ସେତେବେଳେ ପ୍ରଧାନ ଅଧ୍ୟାପକ ଥିଲେ ପ୍ରଫେସର ଏ. ଜି. ହଗ୍ । ସେ ଜଣେ ନିଷ୍ଠାପର ବ୍ୟକ୍ତି ଥିଲେ । କୌଣସି ଧର୍ମ ସମ୍ବନ୍ଧରେ ତାଙ୍କର ସଙ୍କୀର୍ଣ୍ଣ ମନୋଭାବ ନଥିଲା । ଯେ କୌଣସି ଧର୍ମ ହେଉ ନା କାହିଁକି ତା'ର ମୌଳିକତା ଉପରେ ତାଙ୍କର ଯଥେଷ୍ଟ ବିଶ୍ୱାସ ଥିଲା । ସେ ଧର୍ମ ଦିଗରେ ସର୍ବଦା ଉଦାର ମତ ପୋଷଣ କରୁଥିଲେ । ରାଧାକୃଷ୍ଣନ୍ ନିଜର ସେହି ସନ୍ଦର୍ଭଟିକୁ ତାଙ୍କୁ ଦେଖାଇଲେ । ମିଃ ହଗ୍ ସେ ସନ୍ଦର୍ଭଟିକୁ ପାଠ କରିସାରିବା ପରେ ଏତେ ଆନନ୍ଦିତ ହେଲେ ଯେ, ତାହା ଭାଷାରେ ପ୍ରକାଶ କରାଯାଇ ପାରିବ ନାହିଁ । ଛାତ୍ରର ସଫଳତାରେ ଶିକ୍ଷକର ଏତେ ଆନନ୍ଦ ! ଏତେ ସନ୍ତୋଷ ! ଏତେ ତୃପ୍ତି ! ଏ ଆନନ୍ଦ ଥିଲା ତାଙ୍କପାଇଁ ଈଶ୍ୱରଙ୍କର ଆଶୀର୍ବାଦ ପରି । ପ୍ରଫେସର ହଗ୍ ସନ୍ଦର୍ଭଟିର ମାନ ଅତି ଉଚ୍ଚକୋଟିର ବୋଲି ମତବ୍ୟକ୍ତ କରି ତାଙ୍କୁ ଏକ ପ୍ରଶଂସାପତ୍ର ଦେଇଥିଲେ । ତାହା ଥିଲା ରାଧାକୃଷ୍ଣନ୍ଙ୍କ ଜୀବନର ଅମୂଲ୍ୟ ସମ୍ପତ୍ତି ! ସେ ଲେଖିଥିଲେ—

"ଶ୍ରୀ ରାଧାକୃଷ୍ଣନ୍ଙ୍କ ସନ୍ଦର୍ଭଟି ପାଠକରି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ସେ ତାଙ୍କ ସ୍ନାତକ ପରୀକ୍ଷା ପାଇଁ ଡିଗ୍ରୀପାଠର ଦ୍ୱିତୀୟ ବର୍ଷରେ ଏଇ ଯେଉଁ ମୂଲ୍ୟବାନ୍ ତଥ୍ୟସମ୍ବଳିତ ସନ୍ଦର୍ଭଟି ପ୍ରସ୍ତୁତ କରିଛନ୍ତି ତାହା ତାଙ୍କ ପ୍ରତିଭାର ଚିହ୍ନ । ଗୂଢ଼ ତତ୍ତ୍ୱପୂର୍ଣ୍ଣ ଜଟିଳ ଦାର୍ଶନିକ ତତ୍ତ୍ୱଗୁଡ଼ିକୁ ଠିକ୍‌ଭାବରେ ହୃଦୟଙ୍ଗମ କରିବାର ସାମର୍ଥ୍ୟ ଏଥିରେ ପ୍ରକାଶିତ ହୋଇଛି । ଏହାର ଭାଷା ହୃଦୟଗ୍ରାହୀ ଓ ଖୁବ୍ ଉଚ୍ଚକୋଟିର । ମୁଁ ତାଙ୍କର ସଫଳତା କାମନା କରେ ।"

ସେଇ ପ୍ରବନ୍ଧଟି ଭିତରେ ରାଧାକୃଷ୍ଣନ୍‌ଙ୍କର ଚିନ୍ତାଧାରାର ସୂଚନା ମିଳେ । ତାଙ୍କ ମତରେ ଧର୍ମ ମନୁଷ୍ୟର ବିଚାରବୁଦ୍ଧି ଉପରେ ପ୍ରତିଷ୍ଠିତ ହେବା ଉଚିତ । ଧର୍ମ ନାମରେ ଅନ୍ଧଭାବରେ କିଛି ମାନିନେବାକୁ ସେ ଆଦୌ ପସନ୍ଦ କରୁନଥିଲେ । ତାଙ୍କର ଧାରଣା ଧର୍ମ ଅନ୍ତର୍ନିହିତ ଶକ୍ତିର ଜାଗରଣ ଓ ଏହାକୁ ସମ୍ମାନିତ ଢଙ୍ଗରେ ସୁରକ୍ଷା କରିବା ଉଚିତ । ଯୁକ୍ତିଯୁକ୍ତ ଚିନ୍ତା, ଫଳପ୍ରସୂ କାର୍ଯ୍ୟ ଏବଂ ଯଥାର୍ଥ ସାମାଜିକ ବିଧିବିଧାନ ଭିତରେ ଏହା ପ୍ରକାଶିତ ହେବା ଦରକାର । ତା' ନହେଲେ ଧର୍ମର କିଛି ଅର୍ଥ ନାହିଁ ।

## ଭାଗ୍ୟବାଦୀ ରାଧାକୃଷ୍ଣନ୍

ରାଧାକୃଷ୍ଣନ୍ ବଡ଼ ଭାଗ୍ୟବାଦୀ ଥିଲେ । ତାଙ୍କର ଭାଗ୍ୟବାଦ ଅଳସୁଆର ଭାଗ୍ୟବାଦ ନଥିଲା । ନିଜର କର୍ତ୍ତବ୍ୟରେ ଅବହେଳା କରି ଭାଗ୍ୟ ଉପରେ ନିର୍ଭର କରିବା ବ୍ୟକ୍ତି, ସେ ନଥିଲେ । ସେ ଥିଲେ ଅତ୍ୟନ୍ତ ନିଷ୍ଠାପର ନିରଳସ କର୍ମୀ । ଆପେ ଆପେ ଭାଗ୍ୟ ଏକ ଆଗନ୍ତୁକ ପରି ତାଙ୍କ ପାଖରେ ପହଞ୍ଚିଯାଉଥିଲା ଓ ତାର ଆଶୀର୍ବାଦ ଦେଇ ଚାଲିଯାଉଥିଲା । ତାହା ଥିଲା ଜୀବନକୁ ଉଜ୍ଜ୍ୱଳ କରିବାର ଆଶୀର୍ବାଦ । ତାହା ନେଇ ସେ ଉନ୍ନତି ପଥରେ ଆଗେଇଯାଉଥିଲେ । ବିପଦ, ଦୁଃଖ, କଷ୍ଟ ଭିତରେ ଗତିକରି ମଧ୍ୟ ସୁରୁଖୁରୁରେ ସେ ତ ସେସବୁକୁ ଅତିକ୍ରମ କରିପାରୁଥିଲେ ।

ବିଭିନ୍ନ ସମସ୍ୟା ଭିତରେ ସେ ଏପରି ଭାବରେ ସମାଧାନର ପନ୍ଥା ସ୍ଥିରକରି ଆଗେଇପାରୁଥିଲେ ଯେ ତାହା ଦେଖିଲେ ମନେହୁଏ ସତେ ଯେପରି କୌଣସି ଅଦୃଶ୍ୟ ଶକ୍ତି ତାଙ୍କର ଜୀବନତରଙ୍ଗାକୁ ସଙ୍କଟର ସମୁଦ୍ର ବକ୍ଷରେ ସୁରୁଖୁରୁରେ ବାହିନେବା ପାଇଁ ସାହାଯ୍ୟ କରୁଛି । ଏହାହିଁ ହେଉଛି—ତାଙ୍କର ଭାଗ୍ୟ । ସେ ପ୍ରତ୍ୟେକ କାର୍ଯ୍ୟ ସମ୍ପାଦନ କରିବା ବେଳେ ସତେ ଯେପରି କୌଣସି ଭଗବତ୍ ନିର୍ଦ୍ଦେଶ ଲାଭକରୁଥିଲେ ।

ସେ ସଦାସର୍ବଦା ଭାବୁଥିଲେ କୌଣସି ଦୈବୀଶକ୍ତି ମୋ ପରି ଅକିଞ୍ଚନକୁ ବାଟ କଢ଼ାଉଛି । ଜୀବନର ପ୍ରତ୍ୟେକ ପରିସ୍ଥିତିରେ ସେ ଏପରି ପ୍ରେରଣା ଲାଭ କରିଛନ୍ତି । ମଣିଷର ଆତ୍ମଶକ୍ତି ପ୍ରବଳ ହେଲେ ଏ ପ୍ରକାର ପ୍ରେରଣା ମିଳେ । ସେ କର୍ମକ୍ଷେତ୍ରରେ ସଫଳତା ଲାଭ କରିବା ପରେ ଅନୁଭବ କରୁଥିଲେ ଯେ ଏ ସଫଳତା ପଛରେ ତାଙ୍କର ନିଜର କିଛି ହାତ ନାହିଁ । ଏହା ଈଶ୍ୱରଦତ୍ତ ଆଶୀର୍ବାଦର ଫଳ । ସମସ୍ତ ଦୋଷ ତ୍ରୁଟି ହିଁ ତାଙ୍କର ନିଜସ୍ୱ । ସେ ବ୍ୟକ୍ତିଗତ ଭାବରେ ସେଥିପାଇଁ ଦାୟୀ । ଭଗବାନଙ୍କଠାରେ ବିଶ୍ୱାସ ରଖିଥିବା ବ୍ୟକ୍ତିର ଭାବନା ଛଡ଼ା ଏହା ଆଉ କ'ଣ ହୋଇପାରେ !

ତାଙ୍କର ଧାରଣା, ଭାଗ୍ୟ ଅନ୍ୟ କିଛି ନୁହେଁ, ତା' ହେଉଛି କର୍ତ୍ତବ୍ୟଶୀଳ ବ୍ୟକ୍ତିପାଇଁ କୌଣସି ଏକ ଅଦୃଶ୍ୟ ଶକ୍ତିର ଆକସ୍ମିକ ସାହାଯ୍ୟ । ଏ ପ୍ରସଙ୍ଗରେ ନେପୋଲିଅନ୍ଙ୍କ କଥା ତାଙ୍କର ମନେପଡ଼େ । ଯୁଦ୍ଧକ୍ଷେତ୍ରରେ କର୍ମଚାରୀମାନଙ୍କର ପଦୋନ୍ନତି ପାଇଁ ଯେତେବେଳେ ତାଙ୍କ ପାଖକୁ ତାଲିକା ଆସେ, ସେତେବେଳେ ତାଙ୍କର ଦୃଷ୍ଟି ତା' ଉପରେ ଭାସିଯାଇ ହଠାତ୍ କୌଣସି ଏକ ନାଁ ପାଖରେ ଅଟକିଯାଏ ଓ ସେ ସେହି ନାଁ ପାଖରେ ଇଂରାଜୀରେ ଲେଖିଦିଅନ୍ତି, **"Is he lucky ?** ଏ ବ୍ୟକ୍ତି ଭାଗ୍ୟବାନ୍ କି ?" ତା'ପରେ ସେ ଉନ୍ନତ ପଦବୀକୁ ଯାଆନ୍ତି । ସେହିପରି ଭାଗ୍ୟବାନ୍ ଥିଲେ ରାଧାକୃଷ୍ଣନ୍ । କୌଣସି ଅଦୃଶ୍ୟ ଶକ୍ତିର ଶୁଭ ଦୃଷ୍ଟି ଓ ଆଶୀର୍ବାଦ ସର୍ବଦା ତାଙ୍କ ଉପରେ ଝରୁଥିଲା ।

## କର୍ମପଥରେ ଯାତ୍ରା

ଏମ୍. ଏ. ପାଶ କରିବା ପରେ ରାଧାକୃଷ୍ଣନ୍ ସମାଜସେବା ଦିଗରେ ନିଜକୁ ନିୟୋଜିତ କଲେ । ୧୯୦୯ ମସିହାରେ ସେ ପ୍ରେସିଡେନ୍‌ସି କଲେଜର ଦର୍ଶନ ବିଭାଗରେ ଅଧ୍ୟାପକ ରୂପେ ନିଯୁକ୍ତ ହେଲେ । ହିନ୍ଦୁ ଦର୍ଶନର ନିଗୂଢ଼ ତତ୍ତ୍ୱ ବିଷୟରେ ଗମ୍ଭୀର ଗବେଷଣାରେ ସେ ସେତେବେଳେ ମଗ୍ନଥିଲେ । ତାଙ୍କ ଭିତରେ ଏକ ଦୃଢ଼ ଧାରଣା ସୃଷ୍ଟି ହୋଇଥିଲା ଯେ, "ଧର୍ମ ହେଉଛି ଜୀବନର ଏକ ସ୍ୱତନ୍ତ୍ର ଅନୁଭୂତି, ଏହା କାହା ସହିତ ମିଶିପାରିବ ନାହିଁ, ଏପରି କି ନୈତିକତା ସହିତ ମଧ୍ୟ ନୁହେଁ । କେବଳ ନୈତିକତାକୁ ଧର୍ମ ବୋଲି କୁହାଯାଇନପାରେ । ଯାହା ପ୍ରକୃତ ଧର୍ମ, ତାହା ମଣିଷର ଅନ୍ତର୍ନିହିତ ଜୀବନ ସହିତ ଓତପ୍ରୋତ ଭାବରେ ଜଡ଼ିତ । ଏହା ବୁଝିବା ବଡ଼ ଜଟିଳ । ତେବେ ଚିନ୍ତା ଓ ଆଲୋଚନା କଲେ ଏ ଦିଗରେ ଆଲୋକ ମିଳିପାରିବ । ସହଜ କଥାରେ କହିଲେ, ଯାହା ଜୀବନକୁ ସବୁ ଦୁଃଖଠାରୁ ଉପରକୁ ଉଠାଇ ନେଇ ଚିର ଆନନ୍ଦ ଦେଇପାରେ ତାହାହିଁ ଧର୍ମ । ମଣିଷର ଜ୍ଞାନ ଓ ଧାରଣାଠାରୁ ଏହା ଆହୁରି ଗମ୍ଭୀରତର । ଆତ୍ମଶକ୍ତି ସହିତ ଏହାର ସମ୍ପର୍କ ଅଧିକ ।

ମଣିଷ ଧର୍ମର ଆଲୋଚନା କଲେ ଏକ ମହତ୍ତ୍ୱର ସଂସାରର ସନ୍ଧାନ ପାଏ, ତାହା ଏହି ପାର୍ଥିବ ସଂସାରଠାରୁ ଯଥେଷ୍ଟ ଉଚ୍ଚରେ । ଏହି ଲକ୍ଷ୍ୟ-ସ୍ଥଳରେ ପହଞ୍ଚିଗଲେ ମଣିଷକୁ ଈଶ୍ୱରଙ୍କର ସନ୍ଧାନ ମିଳିଯାଏ । ମଣିଷ ଯେତେ ନୀତିବାନ ଓ ଗୁଣବାନ ହେଉନା କାହିଁକି ତାର ଯଦି ଧର୍ମର ମହତ୍ତ୍ୱର ସଂସାର ଉପରେ ବିଶ୍ୱାସ ଓ ଶ୍ରଦ୍ଧା ନରହିବ ତାକୁ ଆମେ ଧାର୍ମିକ ବୋଲି କହିପାରିବା ନାହିଁ । ଶିଶୁର ହୃଦୟପରି ଏକ ସରଳ, ପବିତ୍ର ଓ ନିଷ୍ପାପ ହୃଦୟ ନଥିଲେ ଧର୍ମ ବିଷୟରେ ଧାରଣା କରିହେବା ସହଜ କଥା ନୁହେ । ସଂସାରର ସବୁଠାରୁ ବଳି ଧର୍ମପରାୟଣ ଓ ପବିତ୍ର ବ୍ୟକ୍ତି ହେଉଛି ଶିଶୁ, ସେ ଦେବତା ପରି ପବିତ୍ର । ସେ ସମସ୍ତ ଦେବଗୁଣରେ ମଣ୍ଡିତ ! ମଣିଷ ତା' ନିଜ ରୁଚି ଓ ପ୍ରକୃତିରେ ପରିଚାଳିତ ହୋଇ ଶେଷରେ ମଣିଷ ବା ରାକ୍ଷସରେ ପରିଣତ ହୁଏ । କିନ୍ତୁ ତାର ଜନ୍ମ ଦେବତ୍ୱ ଭିତରୁ ।"

ରାଧାକୃଷ୍ଣନ୍ ବର୍ଷ ବର୍ଷ ଧରି ହିନ୍ଦୁଧର୍ମ ଉପରେ ଆଲୋଚନା ଓ ବିଶ୍ଳେଷଣ କରି ଏଇ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ, ହିନ୍ଦୁଧର୍ମ ଯଥାର୍ଥରେ ସନାତନ ଧର୍ମ । ଏହା ମଣିଷର ଜୀବନ ସହିତ ନିବିଡ଼ ଭାବରେ ସମ୍ପୃକ୍ତ । ସାମାଜିକ ଜୀବନକୁ ଦର୍ଶନର ଆଭିମୁଖ୍ୟରେ ମଣ୍ଡିତ କରିବା ଭାରତୀୟ ସଂସ୍କୃତିର ଲକ୍ଷ୍ୟ । ଭାରତୀୟ ସମାଜ, ପରିବାରସର୍ବସ୍ୱ । ପରିବାର ତାର ସବୁ । ପୃଥିବୀରେ ଯଦି ପ୍ରକୃତ ଧର୍ମକୁ ଅନୁଭବ କରିବାକୁ ହିବା ତା'ହେଲେ ପରିବାର ଭିତରେ ହିଁ ସେ ତାହା ଅଧିକ ଭାବରେ ଅନୁଭବ କରିପାରିବ । ପରିବାର ପ୍ରକୃତରେ ଏକ ପବିତ୍ର ଅନୁଷ୍ଠାନ । ଏଠାରେ ମଣିଷ ପାରିବାରିକ ପ୍ରେମ, ବନ୍ଧୁତ୍ୱ, ବିଶ୍ୱସ୍ତତା, ସମ୍ମାନ, ଦୟା, କ୍ଷମା, ସେବା, କରୁଣା ଓ ତ୍ୟାଗ ପ୍ରଭୃତି ମହତ୍ତ୍ୱର ଗୁଣଗୁଡ଼ିକର ପ୍ରୟୋଗ ପାଇଁ ସୁଯୋଗ ପାଏ ।

ରାଧାକୃଷ୍ଣନ୍ ତାଙ୍କ ଜୀବନରେ ବହୁ ମହାନ୍ ବ୍ୟକ୍ତି ଓ ମନୀଷୀଙ୍କ ଜୀବନୀ ପାଠ କରିଥିଲେ । ତାଙ୍କର ସ୍ମରଣଶକ୍ତି ଅତୀବ ପ୍ରଖର ଥିଲା । ସେ ସିନା ଦେଖିବାକୁ ବିସ୍ମୟକର ନୁହନ୍ତି; କିନ୍ତୁ ସେ ଥିଲେ ଜ୍ଞାନର ଏକ ପ୍ରଚଣ୍ଡ ସୂର୍ଯ୍ୟ । ବିବେକାନନ୍ଦ, ରାମକୃଷ୍ଣ, ଶଙ୍କର ପ୍ରଭୃତିଙ୍କର ପ୍ରଭାବ ତାଙ୍କ ଉପରେ ଯଥେଷ୍ଟ ଭାବରେ ପଡ଼ିଥିଲା ଓ ରବୀନ୍ଦ୍ରନାଥଙ୍କ ଲେଖା ମଧ୍ୟ ପ୍ରଭାବିତ କରିଥିଲା । ସେ ତାଙ୍କର ଧର୍ମ ଧାରଣାକୁ ଅନ୍ତରର ସହିତ ସମର୍ଥନ କରୁଥିଲେ । ସେ ମଧ୍ୟ ରବୀନ୍ଦ୍ର ସାହିତ୍ୟର ଏକ ମୂଲ୍ୟବାନ୍ ଆଲୋଚନା ପୁସ୍ତକ ଆକାରରେ ୧୯୦୮ ମସିହାରେ ପ୍ରକାଶ କରିଥିଲେ । ମ୍ୟାକ୍‌ମିଲନ୍ କମ୍ପାନି ଏହି ପୁସ୍ତକର ପ୍ରକାଶକ । ରବୀନ୍ଦ୍ରନାଥ ନିଜ ଲେଖାର ଏପରି ଏକ ସୁଚିନ୍ତିତ ମୂଲ୍ୟବାନ୍ ଆଲୋଚନା ରାଧାକୃଷ୍ଣନ୍‌ଙ୍କ ଲେଖନୀ ମୁନରେ ଦେଖି ଅତି ଆନନ୍ଦିତ ହୋଇ ତାଙ୍କ ପାଖକୁ ନିମ୍ନ ମର୍ମରେ ପତ୍ରଟିଏ ଲେଖିଥିଲେ ।

"ମୋ ବିଷୟରେ ତୁମର ଏଇ ସମାଲୋଚନା ପୁସ୍ତକଟି ହୁଏତ ଠିକ୍ ଭାବରେ ଗ୍ରହଣଯୋଗ୍ୟ ହୋଇନପାରେ; କିନ୍ତୁ ମୁଁ କହିବି, ଏ ସମାଲୋଚନା ମୋର କଳ୍ପନା ଓ ଚିନ୍ତନସ୍ତରକୁ ଭେଦକରି ଅତିକ୍ରମ କରିଯାଇଛି । ତୁମେ ତୁମ ଉଦ୍ୟମରେ ନିଷ୍ଠାର ସହିତ ବ୍ରତୀହେବା ଫଳରେ ଗୂଢ଼ତତ୍ତ୍ୱ-ଗୁଡ଼ିକର ସଫଳ ବିଶ୍ଳେଷଣ କରିପାରିଛ ଓ ମୁଁ ଏହା ଦେଖି ବିହ୍ୱଳ ହୋଇ

ଉଠିଛି । ତୁମେ ତୁମର ଭାଷା ଭିତରେ ଯେଉଁ ସରସ ମନୋମୁଗ୍‌ଧକର ସାହିତ୍ୟିକ ଶୈଳୀ ଫୁଟାଇଛ ତାହା ବକ୍ତୃତାର ଚିହ୍ନ । ଏଥିପାଇଁ ମୁଁ ନିଜକୁ ଧନ୍ୟ ମନେକରୁଛି ।"

୧୯୧୮ ମସିହାରେ ସେ ଦର୍ଶନଶାସ୍ତ୍ରର ଅଧ୍ୟାପକ ରୂପେ ମହୀଶୂର ବିଶ୍ୱ-ବିଦ୍ୟାଳୟରେ ନିଯୁକ୍ତ ହେଲେ । ସେ ସେଠାରେ ଅତି ଅଳ୍ପ ସମୟ ମଧ୍ୟରେ ନିଜକୁ ଛାତ୍ରପ୍ରିୟ କରିପାରିଥିଲେ । ତାଙ୍କର ଭାଷଣ ଏପରି ଥିଲା ଯେ ଅନ୍ୟ ଶ୍ରେଣୀର ପିଲାମାନେ ମଧ୍ୟ ମନ୍ତ୍ରମୁଗ୍‌ଧ ହୋଇ ଶୁଣୁଥିଲେ । ସେ ଶ୍ରେଣୀରୁ ଚାଲିଆସିବା ପରେ ମଧ୍ୟ ସେହି ପ୍ରକାର ସ୍ତବ୍‌ଧତା କିଛି ସମୟ ପାଇଁ ରହୁଥିଲା । ଦର୍ଶନଶାସ୍ତ୍ର ପରି ଏକ ଶୁଷ୍କ ପାଠ ମଧ୍ୟରେ କି ଅନିର୍ବଚନୀୟ ମଧୁରତା ଥିଲା, ତାହା ଶ୍ରୋତାମାନେ ହିଁ ଜାଣନ୍ତି ।

ରାଧାକୃଷ୍ଣନ୍ ଅନେକଗୁଡ଼ିଏ ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ । ପୃଥିବୀର ବଡ଼ ବଡ଼ ଦାର୍ଶନିକ ଓ ଚିନ୍ତାଶୀଳ ବ୍ୟକ୍ତି ଯଥା— ବର୍ଗସନଲିବର୍ଡ଼୍, ଜେମସ୍ ୱାର୍ଡ଼୍, ଉଇଲିଅମ ଜେମସ୍, ରୁଡ଼ଲଫ୍ ଉକେନ୍, ବର୍ଟ୍ରାଣ୍ଡ୍ ରସେଲ ପ୍ରଭୃତି ଦାର୍ଶନିକ ଓ ଚିନ୍ତାନାୟକମାନଙ୍କର ଚିନ୍ତାଧାରା ବିଶ୍ଳେଷଣ କରି ସମାଲୋଚନାମୂଳକ ଲେଖା ଲେଖୁଥିଲେ । ସେ ଲେଖାଗୁଡ଼ିକ ଅତି ମୂଲ୍ୟବାନ୍ ଥିଲା । ବହୁ ଅନୁରକ୍ତ ପାଠକ ଏହାକୁ ପାଠକରି ପ୍ରଶଂସା କରିଥିଲେ । ମ୍ୟାକ୍‌ମିଲନ୍ କମ୍ପାନୀ ଏହି ପ୍ରବନ୍ଧଗୁଡ଼ିକୁ ଏକତ୍ର କରି ଗୋଟିଏ ବହି ଆକାରରେ ୧୯୨୦ ମସିହାରେ ପ୍ରକାଶ କରିଥିଲେ । ତା'ର ନାମ ଥିଲା, **'The Reign of Religion in Contemporary Philosophy."** ଏ ବହିଟି ପ୍ରକାଶିତ ହେବା-ପରେ, ତାହା ସାରା ପୃଥିବୀର ବହୁ ଖ୍ୟାତନାମା ସମାଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେମାନେ ଖୁବ୍ ଆଗ୍ରହର ସହିତ ଏହା ପଢ଼ି ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ।

ଆମେରିକାର ପ୍ରସିଦ୍ଧ ଦର୍ଶନ ଅଧ୍ୟାପକ ପ୍ରଫେସର ହିନ୍‌ମ୍ୟାନ, ବାର୍ଷିକ ଦର୍ଶନ ଅଧିବେଶନରେ ସମ୍ମାନିତ ହେବାପାଇଁ ଦୁଇଜଣ ଶ୍ରେଷ୍ଠ ଦାର୍ଶନିକଙ୍କୁ ସ୍ଥିର କରିଥିଲେ । ଜଣେ ହେଉଛନ୍ତି ବୋସାଂକ୍ୱିତ (Bosanquot) ଓ

ଆରଜଣଙ୍କ ରାଧାକୃଷ୍ଣନ୍ । ଏହା ତାଙ୍କପାଇଁ ପରମ ସୌଭାଗ୍ୟର କାରଣ ଥିଲା । ତାଙ୍କର ଉପରଲିଖିତ ପୁସ୍ତକଟି କେବଳ ଭାରତ ନୁହେଁ, ଆମେରିକା ଓ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଦର୍ଶନ ଗ୍ରନ୍ଥମାନଙ୍କର ପାଠ୍ୟପୁସ୍ତକ ରୂପେ ବିବେଚିତ ହୋଇଥିଲା । ସେହିଦିନଠାରୁ ସେ ଦର୍ଶନଶାସ୍ତ୍ରର ଲେଖକ ରୂପେ ବିଶ୍ୱରେ ପରିଚିତ ହେଲେ ଓ ତାଙ୍କ ରଚିତ ପୁସ୍ତକଗୁଡ଼ିକର ଚାହିଦା ଦ୍ରୁତ ଗତିରେ ବଢ଼ିଗଲା ।

୧୯୨୧ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରେ ଦର୍ଶନ ଅଧ୍ୟାପକ ରୂପେ ନିଯୁକ୍ତ ହେଲେ । ପ୍ରଫେସର ମୁର୍‌ହେଡ଼୍‌ଙ୍କ ଅନୁରୋଧକ୍ରମେ ସେ ତାଙ୍କ ଦର୍ଶନ ଲାଇବ୍ରେରୀ ପାଇଁ ଗୋଟିଏ ଧାରାବାହିକ ଭାରତୀୟ ଦର୍ଶନ ସମ୍ବନ୍ଧୀୟ ପୁସ୍ତକ ରଚନା କଲେ । ଏଥିପାଇଁ ଅବଶ୍ୟ ତାଙ୍କୁ ଗଭୀର ପରିଶ୍ରମ କରିବାକୁ ପଡ଼ିଥିଲା । ତେବେ ୧୯୦୮ରୁ ସେ ଏ ଦିଗରେ ଅନବରତ ଲେଖାଲେଖି କରୁଥିବାରୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା ନାହିଁ । ଏହା ପୂର୍ବରୁ ତାଙ୍କର ଦୁଇଖଣ୍ଡ ବହି ଭାରତୀୟ ଦର୍ଶନ ଉପରେ ପ୍ରକାଶିତ ହୋଇ ସାରିଥିଲା । ଟିକିନିଖି ସବୁକଥା ଉପରେ ଆଲୋଚନା କରି, ଗୋଟିଏ ଗୋଟିଏ ପୁସ୍ତକ ରଚନା କରିବା ଯେ କି କଷ୍ଟକର ବ୍ୟାପାର, ତାହା ସହଜରେ ଅନୁମେୟ ।

ଆଗେ ଲୋକମାନଙ୍କର ହିନ୍ଦୁଦର୍ଶନ ଉପରେ କିମ୍ଭୂତକିମାକାର ଧାରଣା ଥିଲା । ସେମାନେ ଭାବୁଥିଲେ ଯେ ହିନ୍ଦୁଦର୍ଶନର ସେପରି କିଛି ବଳିଷ୍ଠ ଭିତ୍ତି ନାହିଁ । ଏହା ପୃଥିବୀର ମାନବିକ ଚିନ୍ତାଧାରା ସହିତ ସମ୍ପର୍କ ରଖିବାକୁ ଅକ୍ଷମ । ମଣିଷ ଭିତରେ ଧର୍ମଭାବ ସୃଷ୍ଟି କରିବାର ଶକ୍ତି ଏହା ଭିତରେ ବିଶେଷ କିଛି ନାହିଁ; କିନ୍ତୁ ରାଧାକୃଷ୍ଣନ୍‌ଙ୍କ ଲେଖା ପ୍ରକାଶିତ ହେବାପରେ, ଆସ୍ତେ ଆସ୍ତେ ସେ ଧାରଣା ଲୋକମାନଙ୍କ ମନରୁ ଦୂର ହେବାକୁ ଲାଗିଲା । ସେମାନେ ବୁଝିବାକୁ ଚେଷ୍ଟାକଲେ, ଭାରତୀୟ ଦର୍ଶନ କ'ଣ ଓ ଏହା କେତେ ବିକାଶଶୀଳ । ଏହା ଭିତରେ ଥିବା ଭାବରାଜି କେତେ ଉନ୍ନତ ଓ ସମୃଦ୍ଧ ।

ରାଧାକୃଷ୍ଣନ୍‌ଙ୍କର ପ୍ରଗାଢ଼ ଉଦ୍ୟମ ଫଳରେ ଭାରତୀୟ ଦର୍ଶନ ବିଭିନ୍ନ ବିଶ୍ୱବିଦ୍ୟାଳୟର ଦୃଷ୍ଟି ଆକର୍ଷଣ କଲା ଓ ଏହା ପାଠ୍ୟ ବିଷୟ ରୂପେ ନିର୍ଦ୍ଧାରିତ ହେଲା । ଅତି ଆନନ୍ଦର କଥା ଯେ, ଏନସାଇକ୍ଲୋପେଡ଼ିଆ ବ୍ରିଟାନିକାର ସମ୍ପାଦକ ତାଙ୍କର ଚତୁର୍ଦ୍ଦଶ ପ୍ରକାଶନରେ ଏଥିପାଇଁ ସ୍ୱତନ୍ତ୍ର ସ୍ଥାନ ଦେଇ, ଭାରତୀୟ ଦର୍ଶନ ଉପରେ ଗୋଟିଏ ପ୍ରବନ୍ଧ ଲେଖିବାକୁ ରାଧାକୃଷ୍ଣନ୍‌ଙ୍କୁ ଅନୁରୋଧ କରିଥିଲେ । ସେ ତାହା ଲେଖିଦେବା ଫଳରେ ସେହି ବିଶ୍ୱବିଖ୍ୟାତ ଗ୍ରନ୍ଥର ମୂଲ୍ୟବାନ୍ ପୃଷ୍ଠାରେ ଏହା ସ୍ଥାନ ଲାଭ କରି-ପାରିଲା ।

## ପ୍ରଥମ ୟୁରୋପ ଯାତ୍ରା

ରାଧାକୃଷ୍ଣନ୍‌ଙ୍କ ଲେଖା ସେତେବେଳକୁ ହିବର୍ଟ ଜର୍ନାଲରେ ବାହାରୁଥାଏ । ଡକ୍ଟର ପି. ଏଲ. ଜ୍ୟାକ୍ ଏହାର ସମ୍ପାଦକ ଥାଆନ୍ତି । ସେ ଥିଲେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ମାଞ୍ଚେଷ୍ଟର କଲେଜର ଭୂତପୂର୍ବ ଅଧ୍ୟକ୍ଷ । ମିଃ ଜ୍ୟାକ୍ ରାଧାକୃଷ୍ଣନ୍‌ଙ୍କ ଲେଖାରେ ଏତେ ତନ୍ମୟ ହୋଇଯାଇଥିଲେ ଯେ, ତାଙ୍କୁ ଆମେରିକା ଯିବାପାଇଁ ନିମନ୍ତ୍ରଣ କରିଥିଲେ । ସେଠାରେ ତାଙ୍କ କଲେଜରେ ହିନ୍ଦୁ ଦର୍ଶନ ଉପରେ ଭାଷଣ ଦେବାକୁ ସେ ରାଧାକୃଷ୍ଣନ୍‌ଙ୍କୁ ଅନୁରୋଧ କରିଥିଲେ । ସେ ତାହା ମଧ୍ୟ ରକ୍ଷାକରିଥିଲେ । କଲିକତା ବିଶ୍ୱବିଦ୍ୟାଳୟ ଅବଶ୍ୟ ଏ ବିଗରେ ତାଙ୍କୁ ସାହାଯ୍ୟ କରିଥିଲା ।

ବ୍ରିଟିଶ ରାଜ୍ୟଭୁକ୍ତ ବିଶ୍ୱବିଦ୍ୟାଳୟ କଂଗ୍ରେସରେ ସେ ପ୍ରତିନିଧିତ୍ୱ କରିବା ପାଇଁ ୧୯୨୬ ମସିହା ଜୁନ୍ ମାସରେ ୟୁରୋପ ଯାତ୍ରା କଲେ । ଏହି ଅବସରରେ ମିଃ ଜ୍ୟାକ୍‌ଙ୍କ ନିମନ୍ତ୍ରଣ ରକ୍ଷା ପାଇଁ ସେ ସୁଯୋଗ ମଧ୍ୟ ପାଇଲେ । ହାର୍ଭାଡ଼ ବିଶ୍ୱବିଦ୍ୟାଳୟରେ ସେ ଆନ୍ତର୍ଜାତିକ ଦର୍ଶନ କଂଗ୍ରେସରେ ମଧ୍ୟ ଯୋଗ ଦେଇଥିଲେ । ତାଙ୍କର ପ୍ରଥମ ୟୁରୋପ ଯାତ୍ରା ଅତ୍ୟନ୍ତ ଆନନ୍ଦଦାୟକ ତଥା ସ୍ମୃତିବହୁଳ ଥିଲା ।

ଅକ୍ସଫୋର୍ଡ଼୍, କେମ୍ବ୍ରିଜ୍, ହାର୍ଭାର୍ଡ଼, ପ୍ରିନ୍‌ସ୍‌ଟନ, ୟେଲ ଓ ଶିକାଗୋରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା । ବ୍ରିଟିଶ ଶାସିତ ଭାରତର ଜଣେ ଦାର୍ଶନିକ ପାଶ୍ଚାତ୍ୟ ଜଗତରେ ଏପରି ଭାବରେ ସମ୍ମାନିତ ହେବା ସେ ସମୟରେ କମ୍ ଗୌରବର କଥା ନୁହେଁ ।

ରାଧାକୃଷ୍ଣନ୍ ଯେତେବେଳେ "ହିନ୍ଦୁ ଜୀବନଦର୍ଶନ" ଉପରେ ଭାଷଣ ଦେଉଥିଲେ, ସେତେବେଳେ କହୁଥିଲେ ଯେ, "ହିନ୍ଦୁଧର୍ମ ହେଉଛି ଏକ ଅଗ୍ରଗାମୀ ଐତିହାସିକ ଧର୍ମ ଆନ୍ଦୋଳନ ଯାହା ସବୁଦିନେ ଆଗକୁ ଆଗେଇ ଚାଲିଛି । ଆବଦ୍ଧ ହୋଇ ଏକ ସଙ୍କୀର୍ଣ୍ଣ ସୀମା ମଧ୍ୟରେ ଅଟକି ରହିଯିବା ଏ ଧର୍ମ ଆନ୍ଦୋଳନର ନୀତି ନୁହେଁ । ଏହାର ଧର୍ମଗୁରୁମାନେ ଜ୍ଞାନର ମଶାଲ ଧରି ଆଗରୁ ଆଗକୁ ବଢ଼ିବା ବ୍ୟକ୍ତି ଅଟନ୍ତି । ହିନ୍ଦୁ ବିଶ୍ୱାସ ଭିତରେ ଯେଉଁ କେତେକ ଦୁର୍ବଳ ଭାବନା ରହିଛି, ତାକୁ ବିଶ୍ଳେଷଣ କଲେ ଜଣାଯିବ ଯେ, ପରମ୍ପରା ଓ ସତ୍ୟ ଭିତରେ ସୃଷ୍ଟି ହୋଇଥିବା ଭ୍ରାନ୍ତ ଧାରଣା ମଧ୍ୟରୁ ଏହାର ଉତ୍ପତ୍ତି । ପରମ୍ପରାଗତ କେତେକ ଦୋଷ ତ୍ରୁଟିପାଇଁ, ଧର୍ମ ନିନ୍ଦିତ ହେବାର କୌଣସି କାରଣ ନାହିଁ । ପରମ୍ପରାର ପରିବର୍ତ୍ତନ କରାଯାଇ-ପାରେ; କିନ୍ତୁ ସତ୍ୟ ଅପରିବର୍ତ୍ତିତ । ଭଗବାନ ପରମ୍ପରା ନୁହନ୍ତି, ବରଂ ସେ ସତ୍ୟର ଅବତାର ବୋଲି କହିଲେ ଠିକ୍ ହେବ ।"

ଆମେ ପ୍ରତ୍ୟେକ ଜାତିର ଇତିହାସ ପାଠକଲେ ତା' ଭିତରେ ନାନା ଚଳଣି, ରୀତିନୀତି ଓ ଅନୁଷ୍ଠାନର ଚିହ୍ନ ଦେଖିବାକୁ ପାଇବା । ସେସବୁ ଅନୁଧ୍ୟାନ କରି ଦେଖାଯାଇଛି ଯେ, ପ୍ରଥମେ ଯାହା ନିହାତି ଅଦରକାରୀ ବୋଲି ଅନୁମାନ କରାଯାଏ, ପରେ ତା'ର ଆବଶ୍ୟକତା ଆଦୌ ଉପ-ଲବ୍ଧ ହୁଏନାହିଁ, ଅଥଚ ବଂଶାନୁକ୍ରମେ ସେଗୁଡ଼ିକ ଗଢ଼ିଆସେ । ଏବେ ବର୍ତ୍ତମାନର ଆବଶ୍ୟକତା ଦୃଷ୍ଟିରୁ ଯାହା ଅଦରକାରୀ ମନେହେଉଛି, ପରମ୍ପରା ନାମରେ ତାକୁ ଧରିବାର ଆବଶ୍ୟକତା ଆଦୌ ନାହିଁ । ଦେଶ-କାଳ-ପାତ୍ରକୁ ଚାହିଁ ଯେତେବେଳେ ଯାହା ଦରକାର ସେତେବେଳେ ସେ ନୀତି ଓ ଚଳଣି ଉପରେ ବିଶ୍ୱାସ ରଖି ଚଳିବା ଉଚିତ । ଅତୀତର ସବୁ ବ୍ୟବସ୍ଥା ଠିକ୍ ଥିଲା ବୋଲି ଭାବି, ପରିବର୍ତ୍ତନର ଆବଶ୍ୟକତାକୁ ଆଖି

ବୃଦ୍ଧି କରିବା ଆଦୌ ସମୀଚୀନ ନୁହେଁ । ଏହା ଲୋକମାନଙ୍କ ମନରେ ଭ୍ରାନ୍ତ ଧାରଣା ସୃଷ୍ଟି କରିବ । ଅଗେଇଯିବା ହିଁ ଧର୍ମର ମନ୍ତ୍ର, ପଛେଇବା ନୁହେଁ । ନୈତିକତାରେ ବୃଦ୍ଧି ଭାଗ୍ୟ ଉପରେ ନିର୍ଭର କରିବା ଏହାର ଲକ୍ଷ୍ୟ ନୁହେଁ ।

୧୯୨୬ ମସିହା ସେପ୍ଟେମ୍ବର ମାସରେ ହାର୍ଭାର୍ଡଠାରେ ଦର୍ଶନ-କଂଗ୍ରେସର ଅଧିବେଶନ ବସିଥିଲା । ରାଧାକୃଷ୍ଣନ୍ "ଆଧୁନିକ ସଭ୍ୟତାରେ ନୈତିକତାର ସ୍ଥାନ" ବିଷୟରେ ସେଠାରେ ଏକ ସାରଗର୍ଭକ ଭାଷଣ ଦେଇଥିଲେ । ସେ କହିଥିଲେ, "ଆଜି ବିଜ୍ଞାନର ଯୁଗ । ଆମେ ସମସ୍ତେ କଳ୍ପନାତୀତ ଭାବାବେଗ ଭିତରେ ବିଜ୍ଞାନ ପଥରେ ଆଗେଇଛେ । ବିଜ୍ଞାନ ଆମର ଭୌତିକ ଶରୀରର ପୂର୍ଣ୍ଣ ସମୃଦ୍ଧି ପାଇଁ ଯଥେଷ୍ଟ ସାହାଯ୍ୟ କରିଛି । ପ୍ରତିମୁହୂର୍ତ୍ତରେ ପ୍ରକୃତି ଭିତରେ ଆଜି ଅସମ୍ଭବ ପ୍ରକାରର ପରିବର୍ତ୍ତନ ବିଜ୍ଞାନ ବଳରେ ସଂଘଟିତ ହେଉଛି; କିନ୍ତୁ ସେହି ପରିମାଣରେ ଆତ୍ମାର ଉନ୍ନତି ଦିଗରେ କୌଣସି ଚେଷ୍ଟା ଲୋକସମାଜରେ ପରିଦୃଷ୍ଟ ହୁଏନାହିଁ । ଆଗେ ଲୋକେ, ନୀତିଦିଗରୁ ଯେପରି ଉନ୍ନତ ଓ ସବଳ ଥିଲେ, ଆଜି ଆମେ ତାହା ହୋଇପାରୁ ନାହୁଁ । ଧର୍ମ ଓ ନୀତି ଦୃଷ୍ଟିରୁ ଆମେ ଆମର ପୂର୍ବଜମାନଙ୍କ ଅପେକ୍ଷା ଯଥେଷ୍ଟ ନିମ୍ନରେ ଅଛୁ । ଆମର ପ୍ରକୃତି ଭିତରୁ ସାବଲୀଳତା ଲୋପପାଇଛି ଓ କୃତ୍ରିମତା ବହୁଗୁଣିତ ହୋଇଛି । ସମାଜର ଏକ ସକ୍ରିୟ ଶକ୍ତି ଭାବରେ ନିଜକୁ ପ୍ରତିଷ୍ଠା କରିବାକୁ ଆମେ ଅସମର୍ଥ ହୋଇଛେ । ବିଶାଳ ଜନସମାଜ ମଧ୍ୟରେ ଏକ ଅବହେଳିତ ବିନ୍ଦୁରୂପେ ନିଜକୁ ଅସହାୟ ମନେକରୁଛେ ।

ମଣିଷ ଆଜି ବିଜ୍ଞାନ ବଳରେ ତାର ସମସ୍ତ ଆବଶ୍ୟକତା ପୂର୍ତ୍ତିକରିବାକୁ ସମର୍ଥ ହେଲେ ମଧ୍ୟ, ପୃଥିବୀରେ ଅସଂଖ୍ୟ ଲୋକ ଦାରିଦ୍ର୍ୟ ଓ ଦୁର୍ବିପାକ ମଧ୍ୟରେ ସଢ଼ୁଛନ୍ତି । ଏହାର କାରଣ ଆର୍ଥିକ ଅଭାବ ନୁହେଁ । ଆମମାନଙ୍କ ଭିତରେ ଥିବା ପରସ୍ପର ସାହାଯ୍ୟ ସହାନୁଭୂତିର ଅଭାବ ହିଁ ଏହାର ମୁଖ୍ୟ କାରଣ । ମଣିଷ ବଞ୍ଚିରହିବା ପାଇଁ ଖାଦ୍ୟ ଓ ବସ୍ତ୍ରରୂପକ ଯେଉଁ ମୌଳିକ ଆବଶ୍ୟକତା ଉପରେ ନିର୍ଭର କରିବାକୁ ପଡ଼ିଥାଏ, ତାର ସମବଣ୍ଟନ

ହୋଇ ନପାରିବା ଯୋଗୁଁ ତାକୁ ଅଧିକ ଦୁଃଖ ଭୋଗ କରିବାକୁ ପଡ଼ୁଛି । ଦଳେ ଭୋଗର ପ୍ରାଚୁର୍ଯ୍ୟ ଭିତରେ ବୁଡ଼ି ରହିଥିବାବେଳେ, ଆଉ ଦଳେ ଅଭାବ ଅନଟନ ଭିତରେ ଆର୍ତ୍ତଚିତ୍କାର କରିବାଠାରୁ ବଳି କରୁଣ ଦୃଶ୍ୟ ଏ ସଂସାରରେ ଆଉ କିଛି ନାହିଁ । ଦାରିଦ୍ର୍ୟ ଓ ସମ୍ପଦ ଭିତରେ ବ୍ୟବଧାନ କମାଇବାକୁ ପଡ଼ିବ । ଫାସିବାଦ ବର୍ତ୍ତମାନ କ୍ଷମତା, ଅର୍ଥ, ସୁବିଧା ଓ ସୁଯୋଗର ସମବଣ୍ଟନ ପାଇଁ ଖୁବ୍ ଚେଷ୍ଟା କରୁଛି, ଏହା ଅତି ଆନନ୍ଦର କଥା; କିନ୍ତୁ ଏମାନଙ୍କ ଭିତରେ ଥିବା ପରସ୍ପର ଦ୍ୱନ୍ଦ୍ୱ ଓ ବ୍ୟକ୍ତିସ୍ୱାଧୀନତା ଲୋପପାଇଁ ଅନ୍ଧଭାବରେ ମତିରହିବା, ସବୁଠାରୁ ବଳି ଦୁର୍ଭାଗ୍ୟଜନକ ମନୋଭାବ ।

ଫାସିଷ୍ଟମାନଙ୍କର ଧାରଣା, ପ୍ରତ୍ୟେକର ଆତ୍ମବୃତ୍ତି ସମାନ ହେବା ଉଚିତ ଯାହାକି କୌଣସି ଦିଗରୁ ସମ୍ଭବ ନୁହେଁ । ତା' ବ୍ୟତୀତ ଆତ୍ମବିଶ୍ୱାସର ଅଭାବ ଓ ଦଳର ମୁକ୍ତିପାଇଁ କାମ କରିବାର ମନୋଭାବ ଏଥିରେ ଅଛି । ତେବେ ବୁଝିବା ଉଚିତ, ବ୍ୟକ୍ତିର ମୁକ୍ତିକୁ ବାଦଦେଇ ଦଳର ମୁକ୍ତି କ'ଣ ସମ୍ଭବ ? ନିଜ ଇଚ୍ଛା ଅନୁସାରେ ଜୀବନକୁ ଶୃଙ୍ଖଳିତ କରିବାର ସ୍ୱାଧୀନତା, ମଣିଷ ଏହାଦ୍ୱାରା ହରାଏ । ସ୍ୱାଧୀନ ଭାବରେ ଚିନ୍ତାକରି ନିଜର ମନୋଭାବ ପ୍ରକାଶ କରିବାର ସୁଯୋଗରୁ ସେ ବଞ୍ଚିତ ହୁଏ । ତା'ପାଇଁ ସମାଜ ହୁଏ ଗୋଟିଏ କାରାଗାର ।

ଅବଶ୍ୟ ଫାସିବାଦ ଭିତରେ ଆର୍ଥନୀତିକ ଆଦର୍ଶ ରହିଛି । ସର୍ବସାଧାରଣ ଲୋକଙ୍କୁ ଆର୍ଥିକ ଶୋଷଣରୁ ମୁକ୍ତ କରିବାପାଇଁ ଏଥିରେ ବାଟ ଦିଆଯାଇଛି । ମଣିଷର ଆକାଂକ୍ଷା, ମାନବିକ କୋମଳ ବୃତ୍ତି ଓ ଧର୍ମର ବିନିମୟରେ ଏଇ ଗୋଟିଏ ପ୍ରକାର ଲାଭପାଇଁ ପାଗଳ ହେବା ଅନୁଚିତ । କେବଳ ଅର୍ଥନୀତିକ ଶୃଙ୍ଖଳାଦ୍ୱାରା ସୁସ୍ଥ ମାନବିକତା ଗଢ଼ାଯାଇ ପାରିବ ନାହିଁ । ଜଣେ ମଣିଷପାଇଁ କୋମଳତା, ଆନନ୍ଦ, ଶ୍ରଦ୍ଧା, ପ୍ରେମ, ସେବା, କରୁଣା ନିଶ୍ଚିତ ଭାବରେ ଆବଶ୍ୟକ । ନ୍ୟାୟ ଓ ଅନୁଶାସନର ନିୟମକୁ ପାଳନ କଲେ ମଣିଷକୁ ଅନ୍ତର୍ନିହିତ ଆନନ୍ଦ ମିଳେ । ମଣିଷ ନିଜ ଭିତରେ ନୈତିକ ନିରକ୍ଷରତା ରଖି ଶାରୀରିକ ଶକ୍ତି ଓ ଜ୍ଞାନର ଅଧିକାରୀ ହେବାରେ

କି ମୂଲ୍ୟ ଅଛି ? ମାନବିକତାର ବିକାଶ ପାଇଁ ଯେଉଁ ଧର୍ମ, ବାଦ ଓ ଆଦର୍ଶ କାର୍ଯ୍ୟ କରିପାରିବ ନାହିଁ, ତାହା ଯେତେ ପ୍ରଗତିମୂଳକ ହେଲେ ମଧ୍ୟ ଗ୍ରହଣୀୟ ନୁହେଁ ।"

## ଆଧୁନିକ ସଭ୍ୟତାର ସଙ୍କଟ

ମଣିଷ ଈଶ୍ୱରବିଶ୍ୱାସ ହରାଇଲେ, ନୀତି, ନିୟମ, ଶୃଙ୍ଖଳା ଭୁଲିଗଲେ, କି ଭୟଙ୍କର ଦୁଃଖ ଭୋଗକରେ, ସେ ବିଷୟରେ ପୃଥିବୀର ପ୍ରତ୍ୟେକ ଜାତିଗୁଡ଼ିକୁ ସତର୍କ କରାଇଦେଇଛନ୍ତି । ଏହି ନୀତିହୀନତାକୁ ନେଇ ଆଧୁନିକ ସଭ୍ୟତାର ସଙ୍କଟ ସୃଷ୍ଟି ହୋଇଛି । ଧର୍ମବିଶ୍ୱାସର ଅଭାବ ଆଧୁନିକ ସଭ୍ୟତାର ଏକ ଅଙ୍ଗ । ଆଧୁନିକ ସଭ୍ୟତାକୁ ଯାନ୍ତ୍ରିକ ସଭ୍ୟତା ବୋଲି କୁହାଯାଇପାରେ ଓ ଏହାର ବିଜ୍ଞାନ ବସ୍ତୁବାଦର ପ୍ରଚାର କରେ ।

ଅଲଡସ୍ ହକ୍ସଲି ତାଙ୍କ ପୁସ୍ତକ "ବ୍ରେଭ୍ ନିଉ ୱାର୍ଲଡ୍"ରେ କହିଛନ୍ତି, "ମଣିଷ ବିଜ୍ଞାନ ବଳରେ ବର୍ତ୍ତମାନ ଟେଷ୍ଟିଉବ୍ ବା ବୋତଲ ଭିତରେ ଶିଶୁ ସୃଷ୍ଟି କରିବାର ପଦ୍ଧତି ଶିଖିଲାଣି । ସମୟ ଆସିବ, ମାତୃ-ଗର୍ଭରୁ ଶିଶୁ ଜନ୍ମ ନନେଇ ବୋତଲ ଭିତରୁ ଜନ୍ମ ନେବ । ମଣିଷର କେଉଁ ଅନାଦି ଯୁଗରୁ ଚାଲିଆସିଥିବା ପବିତ୍ର ପାରିବାରିକ ଅନୁଷ୍ଠାନ ଧୂଳିସାତ୍ ହୋଇଯିବ । ମଣିଷର ଚରମ ସାଧନାର ଫଳ ତାର ସାହିତ୍ୟ, କଳା, ଦର୍ଶନ ଓ ଧର୍ମ ମଧ୍ୟ ଧ୍ୱଂସ ହୋଇଯିବ । ମଣିଷର ଶକ୍ତି, ସାମର୍ଥ୍ୟ, ଅନୁଭୂତି ଓ ଚିନ୍ତାଧାରା ହଜିଯିବ । ସୂକ୍ଷ୍ମାନୁଭୂତିର ସତ୍ତା ରହିବ ନାହିଁ । ମନୁଷ୍ୟର ଅନନ୍ତସତ୍ତାର ସ୍ୱାକ୍ଷର ଏ ପୃଥିବୀ ବହନ କରିପାରିବ ନାହିଁ । ଧର୍ମବିଶ୍ୱାସ, ଆଦର୍ଶ ଓ ନୀତିପଥରୁ ତଳକୁ ଖସିଯିବା ଫଳରେ ଆଜି ଆମକୁ ଏହି ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ୁଛି ।" ରାଧାକୃଷ୍ଣନ୍, ହକ୍ସଲିଙ୍କ ଏହି ମତର ପୂର୍ଣ୍ଣ ସମର୍ଥକ ଥିଲେ ।

ତାଙ୍କ ମତରେ ଆଜିକାଲି ସମାଜରେ ଏପରି କେତେକ ଦୁର୍ଭାଗ୍ୟଜନକ ଘଟଣା ଘଟିବାକୁ ଯାଉଛି ଯାହା କି ତାକୁ ଘୋର ଅନ୍ଧକାର ଦିଗକୁ

ଟାଣିନେଉଛି । ମଣିଷର ଶଇତାନ୍ ଈଶ୍ୱରଙ୍କୁ ତାଙ୍କ ଆସନରୁ ବି ତଳକୁ ଖସାଇ ଆଣିଲଣି । ତାଙ୍କ ସ୍ଥାନରେ ସେ ତାର ସଙ୍କୀର୍ଣ୍ଣ ଜାତି, ରାଷ୍ଟ୍ର, ଗୋଷ୍ଠୀ ଓ ଦଳ ପ୍ରଭୃତିଙ୍କୁ ବସାଇଲଣି । ବ୍ୟକ୍ତିଗତ ଜୀବନର ମର୍ଯ୍ୟାଦା ଆସ୍ତେ ଆସ୍ତେ ଲୋପ ପାଇବାକୁ ବସିଛି । ସମୂହ ନାମରେ ବ୍ୟକ୍ତି ଆଜି ବିବ୍ରାନ୍ତ । ଏଇ ନୂଆ ଠାକୁରଙ୍କ ଆଡ଼କୁ ତାର ସମସ୍ତ ଶକ୍ତି, ଧାରଣା ଓ ବିଶ୍ୱାସ ଆକର୍ଷିତ ହେଉଛି ।

ଆଜିର ଏଇ କ୍ଷୁଦ୍ର କ୍ଷୁଦ୍ର ଦଳରୂପୀ ଠାକୁରଙ୍କ ଭକ୍ତମାନେ, ଅନ୍ୟ-ମାନଙ୍କଠାରୁ ଯଥେଷ୍ଟ ଭକ୍ତି ସମ୍ମାନ ଦାବି କରୁଛନ୍ତି । ସେମାନେ ସେହି ସଙ୍କୀର୍ଣ୍ଣ ମତବାଦ ଓ ବିଶ୍ୱାସକୁ ସବୁଠାରୁ ଉର୍ଦ୍ଧ୍ୱରେ ରଖନ୍ତି ଏବଂ ଧର୍ମର ପ୍ରଲେପ ଦେଇ ତା'ର ଆଡ଼କୁ ଅନ୍ୟମାନଙ୍କୁ ଆକର୍ଷଣ କରନ୍ତି । ଅବଶ୍ୟ ସମାଜରେ ଆଉ କେତେକ ଲୋକ ଅଛନ୍ତି ଯେଉଁମାନେ ବ୍ୟକ୍ତି ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରନ୍ତି । ସେମାନେ ଅନ୍ୟର ସୁଖ ଦୁଃଖ, ଭଲ ମନ୍ଦରେ ନିଜକୁ ଅଂଶୀଦାର କରିଥାନ୍ତି । ବ୍ୟକ୍ତିର ଆଶା, ଆଦର୍ଶ, ନୀତି, କୋମଳ ମାନସିକ ବୃତ୍ତି ଉପରେ ସେମାନଙ୍କର ଯଥେଷ୍ଟ ଆସ୍ଥା ଥାଏ । ଏହି ଶ୍ରେଣୀର ଲୋକମାନେ ବର୍ତ୍ତମାନ ସବୁଦିଗରୁ ବାଧାପ୍ରାପ୍ତ ହେଉଛନ୍ତି ।

ମଣିଷଜାତିଟା କଳହପ୍ରିୟ । ଅନେକଙ୍କର ଧାରଣା, ଯୁଦ୍ଧ ହିଁ ବଞ୍ଚି-ରହିବାର ଏକମାତ୍ର ଉପାୟ । ଆଦର୍ଶବାଦୀ ଶାନ୍ତିକାମୀ ଲୋକମାନେ ଏମାନଙ୍କ ଦ୍ୱାରା ସର୍ବଦା ବ୍ୟତିବ୍ୟସ୍ତ ହୁଅନ୍ତି । ଲୋକମାନଙ୍କର ନୀତିଧର୍ମର ପ୍ରଭାବ ଏହି ଦୃଷ୍ଟିରୁ ସମାଜ ଉପରେ ବିଶେଷଭାବରେ ପଡ଼ିପାରେନାହିଁ ।

ବର୍ତ୍ତମାନ ଦେଶ ଦେଶ ଭିତରେ ଅସ୍ତ୍ରଶସ୍ତ୍ରର ଭୟଙ୍କର ପ୍ରତିଯୋଗିତା ଚାଲିଛି । ପୀଡ଼ନର ପ୍ରତିଯୋଗିତାରେ ଯେ ଯେତେ ଆଗେଇ ପାରୁଛି ତାର ଶକ୍ତି ସେତେ ଅଧିକ । ଦିନକୁଦିନ ନୂଆ ନୂଆ ମାରାତ୍ମକ ଅସ୍ତ୍ର ଉଦ୍ଭାବିତ ହେଉଛି । କିଏ କେତେ ଶୀଘ୍ର ମଣିଷସମାଜକୁ ଧ୍ୱଂସ କରିଦେଇପାରେ, ତା'ର ଉପରେ ଶକ୍ତିର କଳନା ନିର୍ଭର କରେ । ଆଜି ଏହି ପ୍ରଳୟର ଆୟୋଜନକୁ ବନ୍ଦ କରିବ କିଏ ? ମହାପ୍ରଳୟ ଯେ ମଣିଷସମାଜ ଆଗରେ

ରୁଦ୍ରମୂର୍ତ୍ତି ଧରି ଛିଡ଼ା ହୋଇଛି ଏହାକୁ କେହି ଅସ୍ୱୀକାର କରିପାରିବେ ନାହିଁ ।

ଆଜିର ଏହି ଅଧଃପତନକୁ ଅନିବାର୍ଯ୍ୟ ଭାବି ତା' ବିରୁଦ୍ଧରେ ସ୍ୱର ଉତ୍ତୋଳନ ନ କରିବା ବିଜ୍ଞତାର କାର୍ଯ୍ୟ ନୁହେଁ । ମଣିଷ ପକ୍ଷରେ ଏ ସଂସାରରେ ଶାନ୍ତି ବ୍ୟତୀତ ଆଉ କିଛି ସାନ୍ତ୍ୱନା ନାହିଁ, ଏକଥା ପ୍ରତ୍ୟେକେ ହୃଦୟଙ୍ଗମ କରିବା ଉଚିତ । ସଂସାରର ଦୁଃଖ ହତାଶା ମଧ୍ୟରେ ସଂସାରକୁ ସୁସ୍ଥ ଭାବରେ ଉପଭୋଗ କରିବାପାଇଁ ଶାନ୍ତି ହିଁ ଏକମାତ୍ର ମହୌଷଧି । ବର୍ତ୍ତମାନ ପୃଥିବୀର ବଡ଼ ବଡ଼ ବୈଜ୍ଞାନିକମାନେ ଭୂମିକମ୍ପ ପରି ଭୟାବହ ପ୍ରାକୃତିକ ଦୁର୍ବିପାକର ଅଜ୍ଞାତ କାରଣଗୁଡ଼ିକୁ ଅନୁସନ୍ଧାନ କରିବାରେ ଲଗିଛନ୍ତି । ତା' ଉପରେ ମଣିଷର କୌଣସି ହାତ ନାହିଁ; କିନ୍ତୁ ଯୁଦ୍ଧ ତ କମ୍ ଭୟାବହ ନୁହଁ! ତା' ଉପରେ ମଣିଷର ପୂର୍ଣ୍ଣ କର୍ତ୍ତୃତ୍ୱ ରହିଛି; ତଥାପି ତାର ନିରାକରଣ ପାଇଁ ସେ କରୁଛି କ'ଣ ? ଏ ମହାବ୍ୟାଧିରୁ ରକ୍ଷା ପାଇବାପାଇଁ ମନୁଷ୍ୟ ଉପାୟ ସ୍ଥିର କରିବା ଉଚିତ ।"

## ଆଜିର ସଭ୍ୟତା ଓ ସମାଜ

ରାଧାକୃଷ୍ଣନ୍‌ଙ୍କ ମତରେ, ଆଜିର ସମାଜକୁ ଦୃଷ୍ଟିଦେଲେ ଜଣାଯିବ ଯେ ତା' ଭିତରେ କିଛି ଗୋଟାଏ ମୌଳିକ ତ୍ରୁଟି ରହିଯାଇଛି । ଏ ସମାଜ ଯଥେଷ୍ଟ ଭାବରେ ଗଣତାନ୍ତ୍ରିକ ନୁହେଁ । ବ୍ୟକ୍ତିର ବ୍ୟକ୍ତିତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ ହେଉଛି ପ୍ରକୃତ ଗଣତନ୍ତ୍ରର ଲକ୍ଷ୍ୟ । ଏ ପୃଥିବୀରେ କୌଣସି ବ୍ୟକ୍ତି ସମ୍ପୂର୍ଣ୍ଣ ରୂପେ ନିର୍ଦ୍ଦୋଷ ନୁହେଁ, ଯାହା ଫଳରେ ସେ ଅନ୍ୟ ଉପରେ ନିଜର ପୂର୍ଣ୍ଣ କର୍ତ୍ତୃତ୍ୱ ଜାହିର କରିପାରିବ । ସେହିପରି କୌଣସି ଜାତିର ଅନ୍ୟ ଏକ ଜାତି ଉପରେ ଅଧିକାର ସାବ୍ୟସ୍ତ କରିବାର ଶକ୍ତି ମଧ୍ୟ ନାହିଁ । କିନ୍ତୁ ସମାଜ, ରାଷ୍ଟ୍ର ଓ ଆନ୍ତର୍ଜାତିକ କ୍ଷେତ୍ରରେ ଶକ୍ତି ତଥା କ୍ଷମତାର ନୀତି ପ୍ରଚଳିତ ।

ଏ ସଂସାର ସବଳର ସଂସାର, ଦୁର୍ବଳର ନୁହେଁ । କେବଳ ସହିବା ହିଁ ଦୁର୍ବଳର ଧର୍ମ, ଶକ୍ତି ପ୍ରୟୋଗ କରିବା ସବଳର ଦାବି । ଆଜି ପୃଥିବୀର ଅଗଣିତ ନିର୍ଯ୍ୟାତିତ ଓ ଦଳିତ ବ୍ୟକ୍ତି ପ୍ରବଳ ଅଶାନ୍ତି ଭିତରେ କାଳ କାଟୁଛନ୍ତି । ତେବେ ଏଥିଭିତରେ ସେମାନଙ୍କ ମଧ୍ୟରେ ବିପ୍ଳବର ସୂତ୍ରପାତ ହେଲାଣି । ସେମାନେ ନିଜର ଦାବି ଓ ଅଧିକାର ବିଷୟରେ ବର୍ତ୍ତମାନ ପ୍ରାୟ ସଚେତନ ହେବାକୁ ବସିଲେଣି । ସମାଜର ଶୋଷକଶ୍ରେଣୀ କବଳରୁ ନିଜକୁ ରକ୍ଷା କରିବାପାଇଁ ସେମାନେ ଜାଗ୍ରତ । ଆଜି ପୃଥିବୀର ସମାଜବାଦୀ ରାଷ୍ଟ୍ରମାନେ ଦଳିତଗୋଷ୍ଠୀର ସାମାଜିକ ତଥା ଆର୍ଥିକ ଉନ୍ନତି ପାଇଁ ଲାଗିପଡ଼ିଲେଣି ଓ ବ୍ୟକ୍ତିର ସମୂହ କଲ୍ୟାଣ ପାଇଁ ଦୃଷ୍ଟି ଦେଉଛନ୍ତି ।

ସଭ୍ୟତା ମଣିଷର ମନ ବା ଶରୀରର ବିଷୟ ନୁହେଁ । ଏହା ଏକ ଅନ୍ତର୍ନିହିତ ଆତ୍ମଶକ୍ତିର ପରିପ୍ରକାଶ । ମଣିଷ କ୍ଷମତା ବା ଜ୍ଞାନର ଅଧିକାରୀ ହୋଇଗଲେ ଯଥେଷ୍ଟ ହେବ ନାହିଁ । ତାକୁ ଆତ୍ମଶକ୍ତି ଓ ଆଧ୍ୟାତ୍ମିକତାର ଅଧିକାରୀ ହେବାକୁ ପଡ଼ିବ । ସେ ଭାବନା ଉଚିତ ନୁହେଁ ଯେ, ପ୍ରଗତିର ଗତି ଆପେ ଆପେ ହୁଏ ଓ ମାନବିକ ଆଦର୍ଶ ତଥା ନିୟନ୍ତ୍ରଣ ତା' ମଧ୍ୟରେ ଆପେ ଆପେ ଅନୁଭୂତ ହୋଇଥାଏ । ମଣିଷ ଏ ପ୍ରଗତି ସ୍ରୋତର ନୀରବଦ୍ରଷ୍ଟା ମଧ୍ୟ ନୁହେଁ । ସେ ହେଉଛି ଏହାର ରୂପକାର । ସାଧନା ଭିତରେ ସେ ନିଜ ଆଦର୍ଶରେ ଏ ପ୍ରଗତିକୁ ରୂପ ଦାନକରେ । ପ୍ରତ୍ୟେକ ଯୁଗ ସେକାଳ ମଣିଷର ଭାବନା ଓ ରୁଚିର ରୂପ ନେଇଥାଏ ।

ଆମ ସଭ୍ୟତାର ଗୋଟିଏ ଦୁର୍ବଳ ଦିଗ ହେଉଛି, ଆମେ ବର୍ତ୍ତମାନ-ପଛରେ ବେଶି ଦଉଡ଼ୁ; କିନ୍ତୁ ଅତୀତ ଓ ଚିରନ୍ତନକୁ ଭୁଲିଯାଉ । ମଣିଷ ଜୀବନର ଯାଥାର୍ଥ୍ୟ ସଂସାର ସେବାରେ ପ୍ରକାଶିତ ହୁଏନାହିଁ । ସତ୍ୟକୁ ଭୁଲିଯାଉଥିବା ଜୀବନ ମୂଲ୍ୟହୀନ । ସ୍ନେହ, ଶ୍ରଦ୍ଧା, ସେବା, ବନ୍ଧୁତ୍ୱ ଉପରେ ଜୀବନ ପ୍ରତିଷ୍ଠିତ ହେବା ଉଚିତ । ସଭ୍ୟତା ସବୁବେଳେ ସବୁକାଳେ ନିଷ୍ଠା ତଥା ନିଃସ୍ୱାର୍ଥପରତା ଉପରେ ବିକଶିତ ହୁଏ । ସମାଜକୁ ପରିବର୍ତ୍ତନ କରିବାକୁ ହେଲେ ଆଗ୍ରେ ଆଗ୍ରେ ବ୍ୟକ୍ତିଗତ ଜୀବନର ଚଳଣିକୁ ପରିବର୍ତ୍ତନ କରିବାକୁ ହେବ । ଏଥିପାଇଁ କଠୋର ଅଧ୍ୟବସାୟ ଆବଶ୍ୟକ । ସ୍ଥିର

ଭାବରେ ଏ ଢଙ୍ଗରେ ଆଗେଇଲେ ଏହା ଫଳଦାୟକ ହୋଇଥାଏ । କ୍ଷିପ୍ରତା ଓ ଅବ୍ୟବସ୍ଥିତ ଭାବ ଦୂର କରିବା ଦରକାର ।

ଯେ କୌଣସି ପରିସ୍ଥିତି ଯେତେ ଜଟିଳ ହେଉ ନା କାହିଁକି ଧୈର୍ଯ୍ୟର ସହିତ ଉଦ୍ୟମ କଲେ ତାର ସମାଧାନ କରାଯାଇ ପାରିବ । ସଭ୍ୟତାର ବିକାଶ ପାଇଁ ବିଜ୍ଞାନର ଯଥାର୍ଥ ବିନିଯୋଗ ଆବଶ୍ୟକ; କିନ୍ତୁ ତାହା ମିଥ ଧର୍ମର ପରିପନ୍ଥୀ ହେବା ଉଚିତ ନୁହେଁ । ମାନବିକତାର ବିକାଶ ସହିତ ସଭ୍ୟତାର ବିକାଶ ଓତଃପ୍ରୋତ ଭାବରେ ଜଡ଼ିତ ।

୧୯୧୯ ମସିହାରେ ରାଧାକୃଷ୍ଣନ୍ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ମାଞ୍ଚେଷ୍ଟର କଲେଜରେ ଦର୍ଶନ ଅଧ୍ୟାପକ ଭାବରେ ନିଯୁକ୍ତ ହେଲେ । ଏହା ତାଙ୍କପାଇଁ ଥିଲା ଏକ ଆଶୀର୍ବାଦ । ତାଙ୍କ କର୍ମପଥରେ ଏହା ଏକ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲା । ସେ ଅକ୍ସଫୋର୍ଡ଼ର ଛାତ୍ରମାନଙ୍କୁ "ତୁଳନାତ୍ମକ ଧର୍ମ" ବିଷୟରେ ଏକ ସୁଚିନ୍ତିତ ଭାଷଣ ଦେବାର ସୁଯୋଗ ପାଇଥିଲେ । ଏହି ସମୟ ମଧ୍ୟରେ ସେ ଲଣ୍ଡନରେ ବହୁ ବିଶ୍ୱବିଦ୍ୟାଳୟରେ ଅସୁମାର ଶ୍ରୋତାଙ୍କ ଗହଣରେ "ଜୀବନର ଆଦର୍ଶ ଦୃଷ୍ଟିକୋଣ" ଉପରେ ମଧ୍ୟ ବହୁ ଭାଷଣ ଦେଇଥିଲେ । ଏହା ତାଙ୍କର ପ୍ରତିଷ୍ଠା ଓ ପ୍ରତିପତ୍ତି ବଢ଼ାଇଥିଲା । ଦର୍ଶନର କେତେକ ସମସ୍ୟା ଉପରେ, ଦୃଢ଼ ମତାମତ ଦେବାର ସୁଯୋଗ ସେ ଏହି ଭାଷଣ ମାଧ୍ୟମରେ ପାଇଥିଲେ । ପୃଥିବୀର ଜ୍ଞାନରାଜ୍ୟରେ ଯେପରି ପରିବର୍ତ୍ତନର ସୂତ୍ରପାତ ହେଉଛି, ସାମାଜିକ ଜୀବନ ତଥା ଧର୍ମ କି ପ୍ରକାର ସଙ୍କଟ ମଧ୍ୟରେ ଗତି କରୁଛି, ସେ ବିଷୟରେ ସେ ବିଶଦ ଧାରଣା ଦେଇଥିଲେ ।

ସେ କହିଥିଲେ, "ଧର୍ମର ବାହ୍ୟ ଉପଚାର ଆଉ ଲୋକମାନଙ୍କୁ ଭୁଲାଇ ପାରୁନାହିଁ । ଲୋକେ ଧର୍ମର ସାରତତ୍ତ୍ୱ କଥା ପଚାରୁଛନ୍ତି । ବର୍ତ୍ତମାନ ଲୋକେ ଜାଗ୍ରତ ହେଲେଣି । ସେମାନେ ଜୀବନର ଗମ୍ଭୀରତା ମାପିବାକୁ ଚାହିଁଲେଣି । ଜୀବନର ମୂଲ୍ୟବୋଧ ବିଷୟରେ ଜାଣିବା ସେମାନଙ୍କର ଇଚ୍ଛା । ଜୀବନର ପ୍ରକୃତ ସତ୍ୟକୁ ଘୋଡ଼ାଇ ରଖିଥିବା ଆବରଣକୁ ଛିଣ୍ଡାଇଦେଇ, ଆଲୋକର ସନ୍ଧାନ ପାଇଁ ଆଗେଇ ଆସିଲେଣି । ଗତାନୁଗତିକ ଧର୍ମଭାବ

ମଣିଷକୁ ପଳାୟନପନ୍ଥୀ କରିଥିଲା, କିନ୍ତୁ ଆତ୍ମାର ଉଜ୍ଜ୍ୱଳ ପ୍ରକାଶ ଅନୁଭବ କରିବାର ଶକ୍ତି ଦେଇପାରିନଥିଲା । ମନେରଖିବାକୁ ହେବ, ଧର୍ମ ବିଷୟରେ ଧାରଣା ଧର୍ମ ନୁହେଁ ।"

## ଅଗକୁ ଆଉ ପାଦେ

ରାଧାକୃଷ୍ଣନ୍‌ଙ୍କର ଧାରଣା, "ଆଧୁନିକ ସଭ୍ୟତାରେ ଜୀବନର ସ୍ପନ୍ଦନ ନାହିଁ । ରାଜନୀତି ଓ ଅର୍ଥନୀତି ଆଜି ଧର୍ମଠାରୁ ବହୁତ ଦୂରରେ । ଯଦି ପ୍ରକୃତ ପ୍ରାଣସତ୍ତା ମଣିଷ ପାଖକୁ ଫେରାଇ ଆଣିବାକୁ ହେବ, ତା'ହେଲେ ଏପରି ଏକ ଧର୍ମର ବିକାଶ କରିବା ଉଚିତ, ଯାହା ପାଖରେ ମଣିଷର ବିଚାରଶକ୍ତିକୁ ସମର୍ପଣ କରିଦେବାର ପ୍ରଶ୍ନ ଉଠିବ ନାହିଁ ଓ ମଣିଷ ମୁକ୍ତ-ଭାବରେ ଆତ୍ମଶକ୍ତିର ଉନ୍ନତି କରିପାରିବ ।"

"ଧର୍ମ ଏକ ବାଧ୍ୟବାଧି ନିୟମକାନୁନ କିମ୍ବା ଶାସନ ପଦ୍ଧତି ନୁହେଁ । ବାସ୍ତବତାକୁ ପ୍ରାଣର ସହିତ ଅନୁଭବ କରିବାପାଇଁ ଏହା ଏକ ଅନ୍ତର୍ଦୃଷ୍ଟି । ବିଜ୍ଞ ବିଚାରକୁ ଭ୍ରମାତ୍ମକ ବୋଲି ଭାବିଲେ ଅତୀତର ସଂକୀର୍ଣ୍ଣ ଧର୍ମସଂପର୍କକୁ ମାନିନେବାକୁ ହେବ । ଏହା କିନ୍ତୁ ଧ୍ୟେୟ ନୁହେଁ । ପ୍ରତ୍ୟେକ ଧର୍ମର ମୁନି ଋଷି କିମ୍ବା ସାଧୁ ସନ୍ଥ ମହାପୁରୁଷମାନେ ଅତ୍ୟନ୍ତ ଉଦାର । ସଙ୍କୀର୍ଣ୍ଣ ମତବାଦକୁ ସେମାନେ ମାନନ୍ତି ନାହିଁ । ସେମାନେ ପ୍ରକୃତ ଆଧ୍ୟାତ୍ମିକ ସତ୍ତାକୁ ଅନ୍ତରଭରି ଅନୁଭବ କରନ୍ତି । ସତ୍ୟ ହିଁ ପ୍ରତ୍ୟେକ ଧର୍ମର ପ୍ରାଣପିଣ୍ଡ । ମତ ଯାହା ହେଉ ନା କାହିଁକି, ସତ୍ୟର ପଥ ସମସ୍ତଙ୍କ ପାଇଁ ସମାନ । ମଣିଷ ଆଧ୍ୟାତ୍ମିକ ଜ୍ଞାନ ମାଧ୍ୟମରେ ଆଧ୍ୟାତ୍ମିକ ସତ୍ତାକୁ ଅନୁଭବ କରିପାରେ । ଧର୍ମ ଭାବନାତ୍ମକ ନୁହେଁ ଓ ଏହା ସମସ୍ତ ତର୍କର ବହୁ ଦୂରରେ ! ଏହା ତର୍କାତୀତ । ଏହା ସମ୍ପୂର୍ଣ୍ଣ ଭାବରେ ଅନ୍ତର୍ଦୃଷ୍ଟିମୂଳକ ଜ୍ଞାନ । ହେଗେଲ୍ ପ୍ରଭୃତି ହେତୁବାଦୀମାନେ ଯୁକ୍ତିକୁ ଯେ ପ୍ରଧାନ ସ୍ଥାନ ଦଅନ୍ତି, ତାହା ଠିକ୍ ନୁହେଁ । ବର୍ତ୍ତମାନର ଯୁଗରୁଚି ଓ କାର୍ଯ୍ୟପଦ୍ଧତି ବିଜ୍ଞାନସମ୍ମତ ତର୍କ ଉପରେ ପ୍ରତିଷ୍ଠିତ ।

## ବିଜ୍ଞାନ ଓ ସଭ୍ୟତା

ଆଜି ଆମ ସଭ୍ୟତାର ପ୍ରବର୍ତ୍ତକମାନେ ପାର୍ଥିବ ଉପାଦାନଗୁଡ଼ିକର ଉପଯୋଗ ଓ ସେ ଦିଗରେ ଅନୁସନ୍ଧାନ ପାଇଁ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଛନ୍ତି । ଆଜି ଏ ପ୍ରୟୋଗ ଜ୍ଞାନ ଓ ଯନ୍ତ୍ର ଉପରେ ଏତେ ମାତ୍ରାରେ ଧ୍ୟାନ ଦେବାର ଦୃଷ୍ଟାନ୍ତ ସଭ୍ୟତାର ଇତିହାସରେ ଏକ ଅଭୂତପୂର୍ବ ଘଟଣା । ଅବଶ୍ୟ ବିଜ୍ଞାନ ଯେ ମଣିଷର ବହୁ ଉପକାର କରିଛି ଏହା ଅସ୍ୱୀକାର କରିଯାଇ ପାରିବ ନାହିଁ; କିନ୍ତୁ ଯେଉଁମାନେ ବର୍ତ୍ତାନାତ୍ମକ ବିଜ୍ଞାନର ସଠିକ ଭାବରେ ଉପଯୋଗ କରିବା ପାଇଁ ଯାଆନ୍ତି ସେମାନେ ବିଜ୍ଞାନର ଦୋଷତ୍ରୁଟି ଓ ବିଜ୍ଞାନମୂଳକ ଜ୍ଞାନର ମୂଲ୍ୟାୟନ ବିଷୟରେ ମଧ୍ୟ ପ୍ରଶ୍ନ ଉଠାଇଥାନ୍ତି । ପ୍ରାକୃତିକ ହିଂସ୍ରାକୁ ଦମନ କରିବା ପାଇଁ ବିଜ୍ଞାନ ଆଗେଇଯାଇଥିଲେ ମଧ୍ୟ ସତ୍ୟର ଉନ୍ମୋଚନ କରିବାପାଇଁ ଏହା ସମର୍ଥ ହୋଇପାରିନାହିଁ । ଇଲେକ୍‌ଟ୍ରୋନ୍ ଓ ପ୍ରୋଟନ୍ ପ୍ରଭୃତି ପ୍ରକୃତ ସତ୍ୟର ରହସ୍ୟ ଉଦ୍‌ଘାଟନ କରିପାରିନାହାନ୍ତି । ଈଶ୍ୱର ଏବଂ ପ୍ରାଣକୁ ଗଣିତର ସମୀକରଣ ସୂତ୍ର ମାଧ୍ୟମରେ ବାହାର କରିଯାଇ ପାରିବ ନାହିଁ । ଯେଉଁ ଦୃଢ଼ ବିଶ୍ୱାସ ପାଇଁ ମଣିଷ ତାର ଜୀବନକୁ ଉତ୍ସର୍ଗ କରିପାରେ ତାହା ମଣିଷର ବୁଦ୍ଧିବାଦ ବା ତର୍କ ଭିତରୁ ସୃଷ୍ଟି ହୋଇନାହିଁ । ମଣିଷର ବ୍ୟକ୍ତିଗତ ଜୀବନର ବିଶ୍ୱରଗତ ଅନ୍ତର୍ଜ୍ଞତାକୁ ଗାଣିତିକ ସୂତ୍ର ଭିତରେ ରୂପ ଦିଆଯାଇପାରିବ ନାହିଁ ।

ସତ୍ୟ ହିଁ ଏହାର ମୂଳ ଉତ୍ସ ଯାହା ସହିତ ମଣିଷର ଜୀବନ ଓତଃପ୍ରୋତ ଭାବରେ ଜଡ଼ିତ ଓ ଏହା ଭିତରୁ ମଣିଷ ପ୍ରେରଣା ଲାଭକରି ଜୀବନକୁ ପରିଶୁଦ୍ଧ କରେ । ବାସ୍ତବତା ବିହୀନ ବିଜ୍ଞାନମୂଳକ ଜ୍ଞାନର ଅ ାରତାକୁ ଅନୁଭବ କରିବା ଉଚିତ । ଏହା ଥିଲା ରାଧାକୃଷ୍ଣନ୍‌ଙ୍କର ଭିବ ନାର ବଳିଷ୍ଠ ପ୍ରକାଶ ।

## ହିନ୍ଦୁ ଦର୍ଶନ

ହିନ୍ଦୁ ଦର୍ଶନ ଉପରେ ରାଧାକୃଷ୍ଣନ୍‌ଙ୍କର ମତାମତ ଅତ୍ୟନ୍ତ ସ୍ପଷ୍ଟ । ଏହା ତାଙ୍କର ଅନୁଭବସିଦ୍ଧ ଅନ୍ତରର ବାଣୀ । ତାଙ୍କ ମତରେ ହିନ୍ଦୁ ଦର୍ଶନ ସତ୍ୟର ଏକ ଅପ୍ରତିହତ ଦୃଢ଼ ଘୋଷଣା । ଏହା ବିଶ୍ଳେଷଣାତ୍ମକ ଜ୍ଞାନରୁ ସୃଷ୍ଟି ହୋଇନାହିଁ । ହିନ୍ଦୁ ଧର୍ମର ଚିନ୍ତାଧାରା ଓ ଧର୍ମାଚାର୍ଯ୍ୟମାନଙ୍କୁ ପ୍ଲୁଟୋ, ପ୍ଲୋଟିନସ୍, ସେଣ୍ଟପଲ୍, ସେଣ୍ଟ ଅଗଷ୍ଟାଇନ୍ ଓ ଲୁଥର୍ ପ୍ରଭୃତି ମହାମନୀଷୀମାନେ ସମର୍ଥନ କରନ୍ତି । ଆଜିର ଆଧୁନିକ ବୈଜ୍ଞାନିକମାନଙ୍କ ମତରେ ନିତ୍ୟନୂତନ ସୃଷ୍ଟିର ଅସମାପ୍ତ ଧାରା ହେଉଛି ଜାଗତିକ ନିୟମ । ଏହାକୁ ଅନୁଭବ କରିବାପାଇଁ ଅନ୍ତର୍ଜ୍ଞାନର ଆବଶ୍ୟକତା ରହିଛି । ଜୀବନ ଜ୍ୟାମିତିର ରୈଖିକ ସମାବେଶ ନୁହେଁ । ସର୍ଜନା ହିଁ ଜୀବନର ସାରତତ୍ତ୍ୱ । ନୂତନତ୍ୱର ସୃଷ୍ଟିରେ ହିଁ ଏହାର ପ୍ରକାଶ । କାର୍ଯ୍ୟ କାରଣର ସିଦ୍ଧାନ୍ତକୁ ଉପେକ୍ଷା କରାଯାଇ ନପାରିଲେ ମଧ୍ୟ ମହତ୍ତର ଜୀବନର ବିକାଶ ପାଇଁ ଏହା ଏକ ଅଟଳ ସିଦ୍ଧାନ୍ତ । ଆମ ଭିତରେ ଯେଉଁ ଆତ୍ମପ୍ରେରଣା ରହିଛି, ବାହାରେ ଯେଉଁ ଦୃଶ୍ୟମାନ ବସ୍ତୁ ଅଛି, ଜୀବନ ବିନ୍ୟାସ ପାଇଁ ତଥା ପ୍ରାଣୀ ଭିତରେ ଥିବା ଲୁକ୍କାୟିତ ଶକ୍ତି ଭିତରୁ କିଛି ନୂତନତାର ସୃଷ୍ଟିପାଇଁ ତାହା ସର୍ବଦା ଜାଗ୍ରତ ।

ଆମେ କେବେହେଲେ ସୃଷ୍ଟିର ସୃଜନାତ୍ମକ ଶକ୍ତିର ରହସ୍ୟ ଉଦ୍‌ଘାଟନ କରିପାରିବା ନାହିଁ । ସତ୍ୟ ହିଁ ଯଦି ସୃଷ୍ଟିର ଏକମାତ୍ର ଶାଶ୍ୱତ ସଙ୍ଗଠନ ତା'ହେଲେ ତାକୁ ଅନୁଭବ କରିବାପାଇଁ ଅନ୍ତର୍ଦୃଷ୍ଟି ହିଁ ଏକମାତ୍ର ଆବଶ୍ୟକ । ତଥାପି ଏହି ଅନ୍ତର୍ଦୃଷ୍ଟି ଭିତରେ ଯଥେଷ୍ଟ ଯୁକ୍ତି ଓ ବିଚାର-ଶୀଳତା ଦରକାର । ଆମର ସୀମିତ ଦୃଷ୍ଟିକୋଣର କାର୍ଯ୍ୟକାରଣ ସମ୍ପର୍କ ବିଷୟରେ ଠିକ୍‌ଭାବରେ ବୁଝିବାକୁ ଅକ୍ଷମ । ଏ ପୃଥିବୀ ହେଉଛି ସଜନଶୀଳ— ଏକ କ୍ରିୟା ଅବିଚ୍ଛିନ୍ନ ଭାବରେ ଚାଲିଛି । ଏହି ଅନନ୍ତ ରହସ୍ୟର ଉଦ୍‌ଘାଟନ ପାଇଁ ଅନ୍ତର୍ଜ୍ଞାନର ଆବଶ୍ୟକତା ଯଥେଷ୍ଟ ବେଶି । ହିନ୍ଦୁ ଦର୍ଶନ ଏହି ଅନ୍ତାନୁଭୂତି ତଥା ଅନ୍ତର୍ଜ୍ଞାନ ଦେବା ଦିଗରେ ଅଧିକ ସମର୍ଥ ।

## ଆତ୍ମଜ୍ଞାନ

ଆତ୍ମଜ୍ଞାନ ଜ୍ଞାନ ଶକ୍ତିର ବିରୋଧ କରେନା । ଏହା ଇନ୍ଦ୍ରିୟର ଆବେଗ ନୁହେଁ କିମ୍ବା ଭାବପ୍ରବଣତାର ଉଚ୍ଛ୍ୱାସ ନୁହେଁ । ମାନସିକ ଶକ୍ତି, ଆତ୍ମଜ୍ଞାନର ଏକ ଅଙ୍ଗ । ଏହା ବିନା ଆତ୍ମଜ୍ଞାନ ପୂର୍ଣ୍ଣାଙ୍ଗ ନୁହେଁ । ବିଶ୍ୱର ଚିରନ୍ତନ ସତ୍ୟ ଅନୁସନ୍ଧାନ କରିବସିଲେ ଈଶ୍ୱରଙ୍କ ସ୍ୱରୂପରେ ପ୍ରକୃତ ଧାରଣା ସୃଷ୍ଟି ହୁଏ । ସେ ଧାରଣା କେବଳ ଏକ ନାମମାତ୍ର ଧାରଣା ନୁହେଁ, ଏହା ମଧ୍ୟ ଏକ ସତ୍ୟ । ପୃଥିବୀର ଅନେକ ସନ୍ତଙ୍କ ପ୍ରକୃତ ଅଛନ୍ତି, ଯେଉଁମାନେ ସୃଷ୍ଟିତତ୍ତ୍ୱ ବିଷୟରେ ଆତ୍ମଜ୍ଞାନ ଲାଭ କରିଥାନ୍ତି; କିନ୍ତୁ ତାହା ନିଖୁଣ ଭାବରେ ପ୍ରକାଶ କରିବା ସମ୍ପୂର୍ଣ୍ଣ ଅସମ୍ଭବ ।

ଆତ୍ମଜ୍ଞାନ କିମ୍ବା ଅନ୍ତର୍ଜ୍ଞାନ ଏକ କହିଲେ ଅତ୍ୟୁକ୍ତି ହେବନାହିଁ; କିନ୍ତୁ ମାନସିକ ଶକ୍ତି କେତେକ ଅସମ୍ପୂର୍ଣ୍ଣ ଅନୁଭୂତିର ସମାହାର । ସେଥିପାଇଁ ସେହି ତଥ୍ୟଗୁଡ଼ିକ ଦ୍ୱନ୍ଦ୍ୱପୂର୍ଣ୍ଣ ଓ ସିଦ୍ଧାନ୍ତ ସମ୍ପୂର୍ଣ୍ଣ ଭାବରେ ନିର୍ଭୁଲ ନୁହେଁ । ମଣିଷର ପ୍ରକୃତ ଲକ୍ଷ୍ୟ ହେଉଛି ତା'ର ଶକ୍ତି, ସାମର୍ଥ୍ୟ, ଆତ୍ମା ଓ ଶରୀରର ଚରମ ବିକାଶ କରିବା । ମଣିଷ ଯେତେବେଳେ ତା'ର ସ୍ୱାର୍ଥମୂଳକ ଅହଂଭାବ ହରାଏ, ସେତିକବେଳେ ଗଭୀର ଆତ୍ମାନୁଭୂତି ପ୍ରକାଶିତ ହୁଏ ଓ ଅନୁଭବ କରେ ଯେ, ସେ ବ୍ୟକ୍ତିଗତ ଭାବରେ ଏକ ମହାଶକ୍ତିର ଅଂଶ । ଶରୀରସର୍ବସ୍ୱ ଜୀବନ, ଅତୃପ୍ତି ତଥା କ୍ଲାନ୍ତିର ସଂଘର୍ଷ ଭିତରେ ଚିର କ୍ଷତାକ୍ତ । ମଣିଷ ନିଜେ ଯାହା ଓ ଯାହା ହେବାକୁ ସେ ଇଚ୍ଛା କରେ ତା'ର ଭିତରେ ତା'ର ଏହି ସଂଘର୍ଷ । ଏସବୁ ଭିତରେ ମଣିଷ କିନ୍ତୁ ତା'ର ଅସ୍ତିତ୍ୱ ହରାଇନାହିଁ । ସେ ଏପରି ଏକ ଜୀବ ଯେ, ନିଜକୁ ମହାନ୍ କରିବାର ଶକ୍ତି ଲାଭ କରିଛି ।

ସହୃଦୟସମ୍ପନ୍ନ ଜୀବନ ସର୍ବଦା ଉଚ୍ଚରେ । ସେ ଜୀବନରେ ବିପୁଳ ଆନନ୍ଦ ଅଛି । ତା' ଭିତରେ ଅସୁମାର ଶାନ୍ତି ଓ ଅନିର୍ବଚନୀୟ ତୃପ୍ତି ଅଛି । ତାହା ବିମଳ ଐଶ୍ୱରିକ ଆନନ୍ଦର ଉତ୍ସ । ଜାଗତିକ ଆନନ୍ଦ ଏହା ପାଖରେ ଅତ୍ୟନ୍ତ ହେୟ । ଏକ ସୁସ୍ଥସମାଜ ଗଠନ ପାଇଁ ମଣିଷର ସହୃଦୟପୂର୍ଣ୍ଣ

ଜୀବନ ଓ ବଳିଷ୍ଠ ବ୍ୟକ୍ତିତ୍ବ ଆବଶ୍ୟକ । ଯେ ଏ ପ୍ରକାର ଜୀବନର ଅଧିକାରୀ, ଆଜିର ଏଇ ପୀଡ଼ିତ ସମାଜକୁ ସୁସ୍ଥ ଓ ସୁନ୍ଦର କରିବା ପାଇଁ ତାଙ୍କର ଅବଦାନ ଅପରିହାର୍ଯ୍ୟ । ସେଇମାନେ ହିଁ କେବଳ ସମାଜରେ ଦୟା, ପ୍ରେମ, କରୁଣାର ନୈତିକ ଅନୁଶାସନ ପ୍ରତିଷ୍ଠା କରିପାରିବେ ।

ସମାଜ ଯେପର୍ଯ୍ୟନ୍ତ ଠିକ୍ ବାଟରେ ନ ଚାଲିଛି, ସେ ପର୍ଯ୍ୟନ୍ତ କୌଣସି ଜୀବନ ନିରାପଦ ନୁହେଁ । ମଣିଷ ତାର ଅତୀତ ଇତିହାସର ଘଟଣାବଳୀକୁ ନେଇ ଚାଲିଛି । ତାହା ହେଉଛି ପାପପୁଣ୍ୟ, କର୍ତ୍ତବ୍ୟ, ଅକର୍ତ୍ତବ୍ୟ, ବିଚାର ଅବିଚାର ତଥା ନ୍ୟାୟ ଅନ୍ୟାୟର ବୋଝ । ଏଥିରୁ ମଣିଷ ନିସ୍ତାର ଲାଭ କରିବାକୁ ଚାହେଁ; କିନ୍ତୁ ଯେ ପର୍ଯ୍ୟନ୍ତ ଇତିହାସର ଧାରା ଚରମ ଲକ୍ଷ୍ୟ ସ୍ଥଳରେ ନପହଞ୍ଚିଛି, ସେ ପର୍ଯ୍ୟନ୍ତ ମଣିଷ ତା' କବଳରୁ ନିଜକୁ ରକ୍ଷାକରି ପାରିବ ନାହିଁ । ଯେଉଁମାନେ ନୈତିକ ଦିଗରେ ସବଳ, ସେମାନେ ଦୁର୍ବଳ ବ୍ୟକ୍ତିକୁ ଏ ଦିଗରେ ସାହାଯ୍ୟ କରିଥାନ୍ତି । ଐତିହାସିକ ଧାରାର ଲକ୍ଷ୍ୟ ହେଉଛି ପୃଥିବୀର ମୁକ୍ତି । ଯେତେବେଳେ ମଣିଷ ଏହି ଲକ୍ଷ୍ୟସ୍ଥଳରେ ପହଞ୍ଚେ, ସେତେବେଳେ ଆଉ ଏହି ପ୍ରକ୍ରିୟାର କାର୍ଯ୍ୟକାରିତା ରହେନାହିଁ । ଇତିହାସର ଯେଉଁ ଗତିଧାରା ଅନନ୍ତ ଶକ୍ତିର ସୂଚନା ଦିଏ, ତାହା ଐତିହାସିକ ପରମ୍ପରାକୁ ଶୃଙ୍ଖଳିତ କରୁଛି ବୋଲି ଆମେ ବିବେଚନା କରୁ । ସେଇ ମହାନ୍ ପୁରୁଷ ଏହି ଗତିଧାରାକୁ ସଦାସର୍ବଦା ଅବିଚ୍ଛିନ୍ନ ଭାବରେ ଗତିଶୀଳ କରାଉଛି ।

ଆମେ ଯଦି କହିବା, ଈଶ୍ୱର ଏ ପୃଥିବୀକୁ ଗଢ଼ିଛନ୍ତି ତା'ହେଲେ କଥାଟା ଠିକ୍ ହେଲନାହିଁ । ଗଢ଼ିବା କାମ କ'ଣ ବନ୍ଦ ହୋଇଗଲାଣି ? ତାହା ଏବେ ବି ଚାଲିଛି ଏବଂ ଅନନ୍ତକାଳ ପର୍ଯ୍ୟନ୍ତ ଚାଲିବ—ଗଢ଼ିପାରିଛନ୍ତି ବୋଲି କୁହାଯାଇନପାରେ । ନୈତିକତାର ଇତିବୃତ୍ତି ଏହି ଦୃଷ୍ଟିରୁ ଐଶ୍ବରିକ ଇଚ୍ଛାର ଏକ ପ୍ରକାଶ । ପାର୍ଥିବ ଶକ୍ତି ମାଧ୍ୟମରେ ଆଧ୍ୟାତ୍ମିକ ଶକ୍ତି ବିକଶିତ ହୁଏ ।

ହିନ୍ଦୁଧର୍ମରେ ଈଶ୍ବରଙ୍କୁ ଜଣେ କାବ୍ୟସ୍ରଷ୍ଟା ବା କବି ହିସାବରେ ଗ୍ରହଣ କରାଯାଇଛି, କାରଣ ସେ ହେଉଛନ୍ତି ହିନ୍ଦୁମାନଙ୍କ ମତରେ ଏହି ସର୍ଜନାର

ସ୍ରଷ୍ଟା । ଈଶ୍ୱରଙ୍କୁ ଯଦି ବ୍ୟକ୍ତି ହିସାବରେ ବିଚାରିବା, ତା' ହେଲେ ସେ ଏଇ ସୃଷ୍ଟି ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ସେ ଏ ବିଶ୍ୱର ବିନ୍ଧୁ । ଏ ଜଗତର ବିଚାରକ ଓ ମାନବଜାତିର ମୁକ୍ତିଦାତା । କିନ୍ତୁ ଈଶ୍ୱର ହେଉଛନ୍ତି ଚରମ ଶକ୍ତିର ଆଧାର, ସମସ୍ତର ଅତୀତ ଏବଂ ଅପରିବର୍ତ୍ତନୀୟ । ତାଙ୍କରି ମାଧ୍ୟମରେ ଚରମର ପରିପ୍ରକାଶ ଓ ଅନୁଭବ ସମ୍ଭବ ହୁଏ । ତାଙ୍କ ପକ୍ଷରେ ଅସମ୍ଭବ ବୋଲି କିଛି ନାହିଁ । ଅସୁମାରି ଅସମ୍ଭବତାର ସମ୍ଭବତା ଭିତରୁ ଏହି ଚରମ ଶକ୍ତିର ସୃଷ୍ଟି । ଏହା ଭିତରୁ ବିଶ୍ୱବିଧାନ ସମ୍ଭବ ହୋଇଛି । ଏହି ଚରମ ସମ୍ଭବତା ଈଶ୍ୱରଙ୍କ ସ୍ୱରୂପ ବିଷୟରେ ଧାରଣା ଦିଏ ଓ ସୃଷ୍ଟିକୁ ନିୟନ୍ତ୍ରଣ କରାଏ । ଈଶ୍ୱର ଆମ ମନର ଏକ ମଧୁର କଳ୍ପନା ନୁହନ୍ତି, ସେ ହେଉଛନ୍ତି ଚରମ ସତ୍ୟର ପରମ ପ୍ରତୀକ । ଲିବନିଜଂ (Leibniz)ଙ୍କ ମତରେ ଈଶ୍ୱର ଚରମସତ୍ୟର ଏକ ସୁସଂହତ ସମନ୍ୱୟ । ଯେତେବେଳେ ଈଶ୍ୱର ଏବଂ ପୃଥିବୀ ଭିତରେ ଅଭିନ୍ନ ସମ୍ପର୍କ ପ୍ରତିଷ୍ଠିତ ହୋଇପାରିବ, ସେତେବେଳେ ସମସ୍ତେ ସେହି ମହାଶକ୍ତି ସହିତ ଏକୀଭୂତ ହୋଇଯିବେ । ବ୍ୟକ୍ତିର ବ୍ୟକ୍ତିସତ୍ତା ଲୋପପାଇବ । ସେତିକିବେଳେ ଏ ସୃଷ୍ଟିପାଇଁ ମୁକ୍ତି ହିଁ ସମ୍ଭବ ହେବ ।

ରାଧାକୃଷ୍ଣନ୍ ହିବର୍ଟଠାରେ ଯେଉଁ ଭାଷଣ ଦେଇଥିଲେ, ଏହା ହେଉଛି ତାର ସାରମର୍ମ । ସେ ସେଠାରେ ଲୋକମାନଙ୍କଠାରୁ ଯେଉଁ ହୃଦୟସ୍ପର୍ଶୀ ସମ୍ବର୍ଦ୍ଧନା ପାଇଥିଲେ ତାହା ତାଙ୍କ ପକ୍ଷରେ ଥିଲା ଅବିସ୍ମରଣୀୟ । ସାମୁଏଲ ଆଲେକ୍‌ଜାଣ୍ଡର, ବର୍ଟ୍ରାଣ୍ଡ୍ ରସେଲ୍, ଏଚ୍. ମିରହେଡ଼, ମ୍ୟାକେଞ୍ଜି ପ୍ରଭୃତି ଇଂଲଣ୍ଡର ଶ୍ରେଷ୍ଠ ଦାର୍ଶନିକମାନେ ତଥା ଭାରତର ରବୀନ୍ଦ୍ରନାଥ ପ୍ରଭୃତି ଏହି ଅଭିଭାଷଣକୁ ଉଚ୍ଚ ସ୍ଥାନ ଦେଇଥିଲେ ।

## ଧର୍ମଦୃଷ୍ଟିରୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ

ରାଧାକୃଷ୍ଣନ୍ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଯେଉଁ ଭାଷଣ ସମୂହ ଦେଇଥିଲେ ଓ କଥା ପ୍ରସଙ୍ଗରେ ଯେଉଁ ମହନୀୟ ବାଣୀ ସବୁ ଉଦ୍ଧାର

କରିଥିଲେ ସେ ସବୁର ସମନ୍ୱୟରେ ଗୋଟିଏ ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ତା' ନାଁ ଥିଲା, **"East and West in Religion"** । ଏହି ଭାଷଣର ମୂଳତତ୍ତ୍ୱ ଥିଲା, "ଧର୍ମ ସର୍ବଦା ନ୍ୟାୟ ବିତରଣ କରେ । ଦୟା, କରୁଣା ପ୍ରତି ସମ୍ମାନ ଦିଏ ଏବଂ ସୃଷ୍ଟିର ପ୍ରତ୍ୟେକଙ୍କୁ ପ୍ରଭୂତ ଶାନ୍ତି ପ୍ରଦାନ କରେ ।"

"ଜଣେ ଧର୍ମଜ୍ଞ ବ୍ୟକ୍ତି ବା ସାଧୁଙ୍କୁ ଆମେ ଅବାଞ୍ଛିତ ବୋଲି ଭାବିବା ଉଚିତ ନୁହେଁ । ସେ ଅଗଣିତ ଜନତାର ସେବା କରନ୍ତି ଏବଂ ସେମାନଙ୍କ ମଧ୍ୟରେ ପ୍ରେମ କରୁଣାର ସମ୍ପର୍କ ସ୍ଥାପନ କରନ୍ତି । ବ୍ୟକ୍ତିର ଆବଶ୍ୟକତା ହିଁ ସେମାନଙ୍କର ପ୍ରଥମ ବିଚାର୍ଯ୍ୟ । ମଣିଷର ଉତ୍କର୍ଷତା, ମନ ଓ ଶରୀର ଉଭୟ ଦିଗରୁ ବିଚାର କରିବା ଉଚିତ । ମାନବସମାଜ ପ୍ରତି ପ୍ରେମର ଅର୍ଥ, ମଣିଷ ସହିତ ଆତ୍ମିକ ସଂପର୍କ ସ୍ଥାପନ କରିବା ।"

ରାଧାକୃଷ୍ଣନ୍ ଅକ୍ସଫୋର୍ଡ଼, ବର୍ମିଂହାମ୍, ମାଞ୍ଚେଷ୍ଟର ଓ ଲିଭର-ପୁଲରେ ଖ୍ରୀଷ୍ଟିୟାନ୍ ଗୋଷ୍ଠୀ ଭିତରେ ଯେଉଁ ଭାଷଣ ଦେଇଥିଲେ ତାହା ଲୋକମାନଙ୍କ ମଧ୍ୟରେ ବିଶେଷ ପ୍ରଭାବ ପକାଇଥିଲା । ସେ ତାଙ୍କ ଭାଷଣ ପ୍ରସଙ୍ଗରେ ବୁଝାଇଥିଲେ ଯେ, ବିପ୍ଳବର ପଥ ଯାତନାମୟ । ଦୁଃଖ, ଯନ୍ତ୍ରଣା, ପୀଡ଼ନ ବିନା ବିପ୍ଳବ ଆଗେଇ ପାରିବ ନାହିଁ । ତାଙ୍କର ଉକ୍ତିକୁ ସମସ୍ତେ ସମର୍ଥନ କରିଥିଲେ । ଅକ୍ସଫୋର୍ଡ଼ର ଏକ ଦୈନିକ ପତ୍ରିକା ତାଙ୍କ ଉପରେ ନିମ୍ନ ଭାବରେ ମତାମତ ଦେଇଥିଲା ।

"ଏହି ଭାରତୀୟ ଧର୍ମପ୍ରଚାରକଙ୍କ ଭାଷଣରେ ଭାବନାର ଇନ୍ଦ୍ରଜାଲ ସୃଷ୍ଟି କରିବାର ଶକ୍ତି ଅଛି । ତାଙ୍କ କଳ୍ପନା ଓ ଭାଷାର ସମ୍ମୋହନ ଶକ୍ତି ରହିଛି । ତା' ବ୍ୟତୀତ ତାଙ୍କ ଧର୍ମ ଉପଦେଶ ଭିତରେ ଏପରି ଏକ ଅନିର୍ବଚନୀୟ ଆଧ୍ୟାତ୍ମିକ ଶକ୍ତି ଅଛି, ଯାହା ବିଶ୍ୱପ୍ରାଣକୁ ଆକର୍ଷଣ କରିବା ପାଇଁ ସମର୍ଥ । ଏହା ମାନବସମାଜର ହୃଦୟକୁ ଦ୍ରବୀଭୂତ କରିପାରୁଛି ଓ ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ ନେଇଯିବା ପାଇଁ ସମର୍ଥ ହେଉଛି ।"

ଏ ପ୍ରକାରର ମତାମତ ଅନ୍ୟାନ୍ୟ କେତେକ ପତ୍ରପତ୍ରିକାରେ ମଧ୍ୟ ପ୍ରକାଶିତ ହୋଇଛି । ରାଧାକୃଷ୍ଣନ୍ଙ୍କର ଭାଷଣ ପାଶ୍ଚାତ୍ୟ ଜଗତକୁ କିପରି ମୁଗ୍ଧ କରିଥିଲା, ଏହା ତାର ପ୍ରମାଣ ।

## ଜୀବନ ସମସ୍ୟା

ଯେଉଁମାନଙ୍କୁ ଭାଗ୍ୟର ଆଶୀର୍ବାଦ ମିଳିଛି ସେମାନେ ଭାବିବା ଉଚିତ ନୁହେଁ ଯେ, ସେମାନଙ୍କ ପାଖକୁ ଭାଗ୍ୟ ଗତାନୁଗତିକ ଧାରାରେ ଆସିଛି । ଯେଉଁ ବ୍ୟକ୍ତି ସୁରକ୍ଷିତ ଓ ଏକ ପରିପୂର୍ଣ୍ଣ ଜୀବନଯାପନ କରିବାର ସୁଯୋଗ ପାଇଛନ୍ତି ତାଙ୍କ ଚତୁର ପାର୍ଶ୍ୱରେ କେତେ ଶୋଚନୀୟ ଦୁଃଖପୂର୍ଣ୍ଣ ଜୀବନ ବେଢ଼ିରହିଛି, ତାହା ସେ ଦେଖିବା ଉଚିତ । ଏ ସଂସାରରେ ପ୍ରତ୍ୟେକ ବ୍ୟକ୍ତି ଅନ୍ତତଃ ଅତିକମ୍‌ରେ ଯେଉଁ ମୌଳିକ ସୁଯୋଗ ସୁବିଧା ପାଇବା ଉଚିତ, ସେଥିରୁ ସେମାନଙ୍କୁ ବଞ୍ଚିତ କରିବା କୌଣସି ବ୍ୟକ୍ତି ପକ୍ଷରେ କାମ୍ୟ ନୁହେଁ । ମୌଳିକ ଆବଶ୍ୟକତା ପୂରଣ ହୋଇପାରୁନଥିବା ବ୍ୟକ୍ତି ପାଇଁ ଅପେକ୍ଷାକୃତ ଭାଗ୍ୟବାନ ବ୍ୟକ୍ତି ସର୍ବଦା ଚିନ୍ତା କରିବା ଉଚିତ । ଅନ୍ୟର ସୁଖସୁବିଧାକୁ ଲୁଣ୍ଠନ କରି ଭାଗ୍ୟବାନ ହେବାର ଗୌରବ ସବୁଦିନେ ରହିବ ନାହିଁ । ଏଥିଲାଗି ରାଧାକୃଷ୍ଣନ୍ଙ୍କର ଧର୍ମମୂଳକ ମତ ।

ଶିକ୍ଷକ ହିସାବରେ ରାଧାକୃଷ୍ଣନ୍ ତରଳ ବୟସର ଛାତ୍ରଛାତ୍ରୀମାନଙ୍କର ଗଭୀର ସମ୍ପର୍କରେ ଆସୁଥିଲେ । ତାଙ୍କର ପାଠ୍ୟ ବିଷୟ ଥିଲା ଦର୍ଶନ । ଏହା ନିଶ୍ଚିତ ଭାବରେ ସତ୍ୟ ଯେ, ଦର୍ଶନ ବିଷୟ ଛାତ୍ରମାନଙ୍କର କୌଣସି ସ୍ୱାର୍ଥ ସିଦ୍ଧିରେ ସାହାଯ୍ୟ କରେ ନାହିଁ; କିନ୍ତୁ ଜ୍ଞାନବୃଦ୍ଧି କରିବା ଦିଗରେ ଏହା ସାହାଯ୍ୟ କରିଥାଏ । ମଣିଷକୁ ସଂସାରର ମୋହଜଞ୍ଜାଳ ଭିତରୁ ଊର୍ଦ୍ଧ୍ୱକୁ ଟେକିନେବା ପାଇଁ ଏହା ସାହାଯ୍ୟ କରେ । ଏହାଦ୍ୱାରା ସେ ଉନ୍ନତ ତଥା ବିକାଶଶୀଳ ହେବାରେ ସୁଯୋଗ ପାଇଥାଏ । ଯେଉଁ-ମାନଙ୍କର ଦର୍ଶନ ପ୍ରତି ଅନୁରକ୍ତି ତଥା ଆଗ୍ରହ ଥାଏ, ସେମାନେ ଏହାକୁ ପାଠକରି ତା' ଭିତରୁ ଯଥେଷ୍ଟ ଲାଭ ଉଠାନ୍ତି । ଏହା ସେମାନଙ୍କ ମନରେ

ମହାନ୍ ଅସୀମ ଭୂତବୋଧ ସୃଷ୍ଟି କରିଥାଏ । ଦର୍ଶନଶାସ୍ତ୍ରର ଅବଦାନକୁ ବିଚାର କଲେ ଦେଖାଯିବ ଯେ, ଏପ୍ରକାର ଶାଶ୍ୱତ ସମ୍ପତ୍ତି ମଣିଷକୁ ଅନ୍ୟ କୌଣସି ବାଟରେ ସଂସାର ଦେଇପାରିବ ନାହିଁ କିମ୍ବା ଏହାର ଅଧିକାରି-ଠାରୁ ସେ ନେଇପାରିବ ନାହିଁ ।

ଦର୍ଶନଶାସ୍ତ୍ର ଭିତରେ ଏକ ପ୍ରକାର ମାନସିକ ମହୌଷଧ ଅଛି, ଯାହା ମଣିଷର ବିଫଳ ମନୋଭାବ, ନୈରାଶ୍ୟ, ଦୁଃଖ, ବିପତ୍ତି ଓ ସମସ୍ତ ପ୍ରକାରର କ୍ଲାନ୍ତିକୁ ଦୂର କରିବାପାଇଁ କ୍ଷମ । ଧନସମ୍ପତ୍ତି କିମ୍ବା ପାର୍ଥିବ ବିଷୟଲାଭ କରିବାପାଇଁ ଏହା ପ୍ରେରଣା ଦେଇପାରେ ନାହିଁ । ଦର୍ଶନଶାସ୍ତ୍ର ଅଧ୍ୟୟନ ଫଳରେ ମଣିଷର ମନ ସେଇ ମହାନ୍ ଲକ୍ଷ୍ୟ ଓ ଆଦର୍ଶ ପ୍ରତି ଆକର୍ଷିତ ହୁଏ ଯାହା ସଫଳତା ଦାନକରିବା ଦିଗରେ ସାହାଯ୍ୟ କରିଥାଏ । ପ୍ରକୃତ ମାନବଗଠନ ହିଁ ଦର୍ଶନଶାସ୍ତ୍ରର ମୂଳ ଲକ୍ଷ୍ୟ ।

ରାଧାକୃଷ୍ଣନ୍ ଯଥାର୍ଥରେ ଥିଲେ ଜଣେ ଶିକ୍ଷକ । ସେ ଛାତ୍ରଛାତ୍ରୀମାନଙ୍କୁ ପଢ଼ାଇବା ସମୟରେ ନୈତିକ ବିଧାନ ଉପରେ ଯଥେଷ୍ଟ ଦୃଷ୍ଟି ଦେଉ-ଥିଲେ । ତାଙ୍କ ମତରେ ମଣିଷର ଜୀବନ ସର୍ବଦା ଅନିଶ୍ଚିତ ପରିବେଶ ମଧ୍ୟରେ ଗତିକରୁଛି । ଜୀବନରେ ଏପରି କେତେକ ମୁହୂର୍ତ୍ତ ଆସେ, ଯେତେ-ବେଳେ ମଣିଷ ଧର୍ମର ବିରୁଦ୍ଧାଚରଣ କରେ ଓ ଅଧର୍ମଭାବ ଆମ ହୃଦୟକୁ ଜୟ କରିଥାଏ । ଏହି ଦୁର୍ବଳ ମନୋଭାବକୁ ଦମନ କରିବା ପାଇଁ ଏକମାତ୍ର ସହାୟକ ହେଉଛି ଆଧ୍ୟାତ୍ମିକତା, ଉଦାରତା, ଆତ୍ମଦର୍ଶନ ଓ ପ୍ରେମ । ଏହାରି ଭିତରେ ପ୍ରାଣକୁ ପଲ୍ଲବିତ କରାଯାଇପାରିଲେ ମଣିଷ ଅନୀତି ଓ ଅଧର୍ମର ଭୟଙ୍କର ଆକ୍ରମଣରୁ ନିଜକୁ ରକ୍ଷା କରିପାରିବ । କୋଳାହଳମୟ ଜୀବନରେ ନିର୍ଜନତା ମଣିଷ ପାଇଁ ଅନ୍ୟ ଏକ ଆଶୀର୍ବାଦ । ଏହି ମଧୁର ମୁହୂର୍ତ୍ତରେ ହୃଦୟ ଓ ଆତ୍ମା ନିର୍ମଳ ଆନନ୍ଦଲାଭ କରିଥାଏ । ଏହା ମହାନସତ୍ତା ସହିତ ଆତ୍ମସଂଯୋଗ ପାଇଁ ମଣିଷକୁ ସାହାଯ୍ୟ କରେ । ଚିନ୍ତା-ରାଜିର ବିକାଶ ଓ ବ୍ୟକ୍ତିତ୍ୱର ପରିପ୍ରକାଶ ପାଇଁ ଏହା ସାହାଯ୍ୟ କରିଥାଏ । ସେହି ନୀରବତା ଭିତରେ ଆମେ ଆତ୍ମାର ଚିର ନିସ୍ପନ୍ଦବାଣୀ ଶୁଣିବାକୁ ପାଉ ଏବଂ ମୁକ୍ତିପାଇଁ ମୋହଗ୍ରସ୍ତ ଜୀବନର ବିକଳ କାନ୍ଦଣା ମଧ୍ୟ ଶୁଣୁ ।

ସେହି ନୀରବ ମୁହୂର୍ତ୍ତିରେ ମନୁଷ୍ୟ ତର ମଙ୍ଗଳମୟ, ତର ଆତ୍ମସ୍ଥଳୀ ସ୍ୱର୍ଗଧାମ ପ୍ରତି ବ୍ୟାକୁଳ ସ୍ୱରରେ ଗୁହେଁ । ଅସୀମତା ଲାଭପାଇଁ ସସୀମତାର ନିବେଦନ ସେଇ ମୁହୂର୍ତ୍ତିରେ ଅନ୍ତର ଭିତରେ ଶୁଣାଯାଏ । ଆମେ ଏକାକୀ ଥିବାବେଳେ ଯାହା ଆମ ଭିତରେ ସମ୍ପାଦନ କରୁ ତାହାହିଁ ଆମର ଧର୍ମ । ପ୍ରତ୍ୟେକର ଅନ୍ତର ତା'ପାଇଁ ଏକ ପବିତ୍ର ପୀଠ । ଯେତେଦୂର ସମ୍ଭବ ଆମେ ପ୍ରତିଦିନ କିଛି ସମୟ ପାଇଁ ସେହି ପବିତ୍ର ପୀଠକୁ କର୍ମମୟ ଜଞ୍ଜାଳ ଭିତରୁ ଯିବା ଉଚିତ । ଏହା ହେଲେ ଆମେ ଆମର ଅନ୍ତଃଶକ୍ତିର ଆବିଷ୍କାର କରିପାରିବା । ବାହାରକୁ ଆମେ ଯାହା ଦେଖାଯାଉଛେଁ ଭିତରେ ପ୍ରକୃତରେ କ'ଣ ତା'ର ଏକ ଚିତ୍ର ଆଖି ଆଗରେ ନାଚଉଠିବ ।

ଆମ ଭିତରୁ ଅନେକ ହେଉଛନ୍ତି ଆତ୍ମପ୍ରତାରକ । ଅନ୍ତଃଦର୍ଶନ ହିଁ ଏକମାତ୍ର ଆତ୍ମମାନଙ୍କୁ ଏ ଅପକର୍ମରୁ ରକ୍ଷା କରିପାରିବ । ନୀରବ ଆତ୍ମ ସଂଯୋଗ ହିଁ ଆରାଧନାର ଉତ୍ସ । ସବୁ ସମୟରେ ନୀରବତାର ମୂଲ୍ୟ ଅମାପ । ତା' ମାଧ୍ୟମରେ ମନୁଷ୍ୟ ସତ୍ୟର ନିକଟବର୍ତ୍ତୀ ହୋଇପାରେ । ଜୀବନକୁ କିପରି ଧର୍ମପଥରେ ଉପଯୋଗ କରାଯାଇ ପାରିବ ସେ ବିଷୟରେ ମଣିଷ ସଚେତନ ହୁଏ ।

ବହୁ ଲୋକଙ୍କର ଧାରଣା ଯେ ଓପାବ୍ରତ ହିଁ ଈଶ୍ୱର ଉପାସନା । ଏହା ପ୍ରକୃତରେ ଏକ ଭ୍ରାନ୍ତଧାରଣା । ଈଶ୍ୱରଙ୍କ ପାଖରେ ପବିତ୍ର ଓ ଶୁଦ୍ଧ ହୃଦୟର ସମର୍ପଣ ହିଁ ପ୍ରକୃତ ଉପାସନା । ମୃଗନାଭିରେ ସୁଗନ୍ଧିତ କସ୍ତୁରୀ ଥାଏ; କିନ୍ତୁ ମୃଗ ନିଜେ ତା' ଜାଣିପାରେ ନାହିଁ ଏବଂ ସେ ଭାବେ ଯେ ସେ ସୁଗନ୍ଧ ବାହାରୁ ଆସୁଛି । ତାହାକୁ ଲାଭ କରିବା ପାଇଁ ସେ ଅକ୍ଲାନ୍ତ ଉଦ୍ୟମ କରେ ଓ ଶେଷରେ ପରାସ୍ତ ହୁଏ । ଆମେମାନେ ଠିକ୍ ସେହିପରି ନିଜ ଭିତରେ ଥିବା ଈଶ୍ୱରଙ୍କ ସତ୍ତାକୁ ଅନୁଭବ କରିପାରୁ ନାହୁଁ ଓ ସବଦା ତାଙ୍କୁ ବାହାରେ ଖୋଜିଥାଉ । ପ୍ରକୃତରେ ଦେଖିବାକୁ ଗଲେ ଈଶ୍ୱର ଆମ ନିଜ ଭିତରେ ଅଛନ୍ତି ଓ ତାଙ୍କୁ ଲାଭ କରିବାପାଇଁ ଅନ୍ତର୍ଦ୍ଦୃଷ୍ଟି ଆବଶ୍ୟକ । ନିର୍ବୋଧ ମଣିଷ ଠାକୁରଙ୍କ ପାଖରେ ଫୁଲ ଚଢ଼ାଇବା ପାଇଁ ହ୍ରଦ, ପୋଖରୀ, ବଣ ପାହାଡ଼ ବୁଲିବୁଲେ । କିନ୍ତୁ ସେ ଜାଣେନି ଯେ, ତା' ନିଜ

ଭିତରେ ହୃଦୟସ୍ୱରୂପକ ସୁଗନ୍ଧିତ ଫୁଲଟିଏ ପ୍ରସ୍ଫୁଟିତ ହୋଇ ରହିଛି ଓ ସେ ତାକୁ ଅର୍ପଣ କରିପାରନ୍ତି । ମଣିଷ ନିଜକୁ ଆପେ ଈଶ୍ୱରଙ୍କ ପାଖରେ ଅର୍ପଣ କରିବା ଉଚିତ । ଯାହା ଅପବିତ୍ର, ଅପରିଶୁଦ୍ଧ, ବିଚ୍ଛିନ୍ନ, ବିଚ୍ୟୁତ— ତାକୁ ଈଶ୍ୱରଙ୍କ ପାଖରେ ଅର୍ପଣ କରାଯାଇପାରେନାହିଁ ।

ଈଶ୍ୱରଙ୍କ ଦେଉଳ ହେଉଛି ମଣିଷର ଶରୀର । ତା'ର ଭିତରେ ଯେଉଁ ଆତ୍ମସତ୍ତା ଅଛି ତାହାହିଁ ବ୍ରହ୍ମ । ସାଧାରଣ ମଣିଷ ମାୟାଜାଲରେ ଆଚ୍ଛନ୍ନ ଓ ଅନ୍ତଃଦର୍ଶନ କରିପାରେ ନାହିଁ; ତଥାପି ତାକୁ ସେଇ ଶାଶ୍ୱତର ସନ୍ଧାନ ନିଜ ଭିତରୁ କରିବାକୁ ହେବ । ଏହି ପଥରେ ଥିବା ଅସରନ୍ତି ବାଧାବିଘ୍ନ ଆଡ଼େଇଦେଇ ଆଗକୁ ଯିବାକୁ ପଡ଼ିବ । ଏହା ନହେଲେ ମଣିଷର ଜୀବନ ବହୁ ଅପ୍ରାସଙ୍ଗିକ ଅର୍ଥହୀନ ଯୋଗାଯୋଗରେ ପରିଣତ ହୋଇ କୌଣସି ନିର୍ଦ୍ଦିଷ୍ଟ ଗତି ସହିତ ସମ୍ପୃକ୍ତ ହୋଇପାରିବ ନାହିଁ ଓ ଜୀବନ ବିଫଳତାର ପ୍ରତୀକ ହେବ ।

ଯାହା ଜୀବନକୁ ମୂଲ୍ୟ ଦାନକରେ ଓ ଅର୍ଥପୂର୍ଣ୍ଣ କରାଇଥାଏ, ତାହା ଏପରି ଏକ ଲକ୍ଷ୍ୟ ଯାହାକୁ ବାଧାବିଘ୍ନ ଭିତରେ ଏକାଗ୍ର ଚିତ୍ତରେ ଅନୁ- ସରଣ କରିବାକୁ ପଡ଼ିବ । ସୁଯୋଗ ପାଇଲେ ମଣିଷ ବିଭିନ୍ନ ଘଟଣା ଉପରେ ଆଗ୍ରହ ପ୍ରକାଶ କରେ, ତା'ର ଭିତରୁ ଜୀବନର ମୂଲ୍ୟ ଆହରଣ କରିବା ବିଧେୟ । ମହାସତ୍ତା ସହିତ ଆତ୍ମସଂଯୋଗଦ୍ୱାରା ଜୀବନ ସଂସାରର ଜଞ୍ଜାଳବଦ୍ଧ ପରିବେଶରୁ ମୁକ୍ତ ହୁଏ । ଏହାଦ୍ୱାରା ଚିତ୍ତ ଏକାଗ୍ର ହୁଏ, ଭାବନା ସଂଯତ ହୁଏ ଓ ହୃଦୟ ଶୁଦ୍ଧ ଓ ସୁବିମଳ ହୁଏ । ଆତ୍ମସଂଯୋଗ ହିଁ 'ଯୋଗ' । ଏଥିପାଇଁ ଦରକାର ଆତ୍ମ ନିଷ୍ଠା, ଧ୍ୟାନ ଓ ନିର୍ଜନ ପରିବେଶ ।

ରାଧାକୃଷ୍ଣନ୍ ଭଲରୂପେ ଅନୁଭବ କରୁଥିଲେ ଯେ, ସେ ପାଶ୍ଚାତ୍ୟ ଜଗତକୁ ଆସି ଦର୍ଶନ ଶାସ୍ତ୍ରର ଗୂଢ଼ତତ୍ତ୍ୱ ଉପରେ ଯେଉଁ ସବୁ ଆଲୋଚନା ଭାଷଣ ପ୍ରସଙ୍ଗରେ କଲେ ତାହା ବ୍ୟର୍ଥ ହୋଇନି । ଏହାର ପ୍ରଭାବ ଲୋକ- ମାନଙ୍କ ଉପରେ ପଡ଼ୁଛି । ସେଠାକାର ଲୋକମାନେ ଦର୍ଶନତତ୍ତ୍ୱକୁ ଓ ଦାର୍ଶନିକ ସତ୍ୟକୁ ଉପଲବ୍ଧି କରିଛନ୍ତି । ଜୀବନ ସହିତ ତା'ର ସମ୍ପର୍କ କ'ଣ ସେ ବିଷୟରେ ଧାରଣା ଲାଭକରିଛନ୍ତି ।

ଅସୀମ ଧୈର୍ଯ୍ୟ ଓ ମାନସିକ ଶାନ୍ତି ଭିତରେ ମାନବଜୀବନ ପ୍ରକାଶିତ ହୁଏ । ଠିକ୍ ଭାବରେ ବଞ୍ଚିରହିବାପାଇଁ ଏହା ମଣିଷକୁ ଯୋଗ୍ୟ କରାଏ । ମଣିଷର ସ୍ୱାସ୍ଥ୍ୟ ଓ ସମ୍ପତ୍ତି ଅପେକ୍ଷା ତାର ମାନସିକ ଶାନ୍ତି ଅଧିକ ମୂଲ୍ୟବାନ୍ । ଯେଉଁମାନେ ବିଭବଶାଳୀ ଓ ସାମାଜିକ ଖ୍ୟାତିସମ୍ପନ୍ନ ସେମାନଙ୍କୁ ଉଚ୍ଚ ବା ବଡ଼ ବୋଲି କୁହାଯାଇନପାରେ । ଯେ ଗରିବ ଓ ଧନହୀନ ସେ ଈଶ୍ୱରଙ୍କ ଆଖିରେ କୌଣସି ଦିଗରୁ ଶ୍ରେଷ୍ଠ ନୁହେଁ । ଅପର ପ୍ରତି ଦୟା, କର୍ତ୍ତବ୍ୟରେ ସାଧୁତା ଓ ଅନ୍ୟ ସହିତ ସମ୍ପର୍କରେ ସହୃଦୟତା ଥିଲେ ମଣିଷର ବଡ଼ପଣିଆ ଅଛି ବୋଲି ଗ୍ରହଣ କରିବାକୁ ପଡ଼ିବ ।

ଦେଖାଯାଇଛି, ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ ଅତ୍ୟନ୍ତ ବିଭବଶାଳୀ, ଶକ୍ତିସମ୍ପନ୍ନ ଓ ସ୍ୱାସ୍ଥ୍ୟବାନ୍, ଅଥଚ ସେମାନେ ମାନସିକ ଯନ୍ତ୍ରଣା-ପିଷ୍ଟ । ସେମାନଙ୍କ ମୁହଁରେ ଯନ୍ତ୍ରଣା ଲୁଚିଇବା ପରିହାସ ଥିଲେ ମଧ୍ୟ ହୃଦୟ ଭଗ୍ନ । ନିଜର ସ୍ୱରୂପକୁ ଲୁଚାଇବା ପାଇଁ ସେମାନେ ସମସ୍ତ କ୍ଷମତା ଓ ଅର୍ଥକୁ ବ୍ୟବହାର କରିଥାନ୍ତି ଏବଂ କେତେକ ବାହ୍ୟ ସଫଳତା ଭିତରେ ନିଜକୁ ହଜାଇଦେଇ ସେମାନଙ୍କ ପ୍ରବୃତ୍ତି ଚରିତାର୍ଥ କରିଥାନ୍ତି । ନିଜ ଭିତରକୁ ଦୃଷ୍ଟି ପକାଇଲାବେଳେ ସେମାନେ ଦେଖନ୍ତି ଯେ, ଗୋଟାଏ କିଛି କ୍ଷତ ହୃଦୟ ଭିତରେ ମାଡ଼ିଯାଇ ମନକୁ ସର୍ବଦା ବିବ୍ରତ କରୁଛି । ସେମାନେ ଅନୁଭବ କରନ୍ତି ଯେ ଏହା ତାଙ୍କ ପ୍ରତି ପ୍ରକୃତିର ନିଷ୍ଠୁର ଅଭିଶାପ । ଏହା ଫଳରେ ସେମାନେ ନିଜ ପରିବାର ଓ ପୁତ୍ରକନ୍ୟା-ମାନଙ୍କ ପାଖରେ ମଧ୍ୟ ନିଜକୁ ଅପର ବ୍ୟକ୍ତି ରୂପେ ଅନୁଭବ କରିଥାନ୍ତି ।

ସେମାନେ କୌଣସିଠାରେ ସ୍ଥାୟୀ ଭାବରେ ନିଜ ଆସନ ଦୃଢ଼ କରି-ପାରନ୍ତି ନାହିଁ । ବୟସ ବୃଦ୍ଧି ସହିତ ସେମାନେ ନିଜକୁ ଏକାକୀ ଓ ଅସହାୟ ମନେକରନ୍ତି । ସେମାନଙ୍କ ପକ୍ଷରେ ଜୀବନ ଅର୍ଥହୀନ ହୋଇ-ଉଠେ । ନୟନରେ ଫୁଟିଉଠେ ଭୟାତୁର ଚାହାଣି । ସେ ଚାହାଣି ନୈରାଶ୍ୟ ଓ ବ୍ୟଥାର ଚାହାଣି । ଏ ଚାହାଣି ଭିତରେ ଆତ୍ମୀୟତା ନଥାଏ ଓ ତାକୁ ଦେଖିଲେ ମନେହୁଏ ଯେପରି ସେମାନେ ଅନୁଭବ କରୁଛନ୍ତି ଯେ ଏ ବିଶ୍ୱ ତାଙ୍କର ଶାନ୍ତିମୟ ଗୃହ ନୁହେଁ । ସେମାନେ କୋଉ

ଦୂରଦୂରାନ୍ତରୁ ଆସିଛନ୍ତି; କିନ୍ତୁ ଫେରିପାରୁ ନାହାନ୍ତି । ଏକ ଅଜ୍ଞାତ ଦୁଃଖ-ଯନ୍ତ୍ରଣା ସେମାନଙ୍କ ମନକୁ ସର୍ବଦା ଆଚ୍ଛାଦନ କରି ରଖିଥାଏ । ସେମାନେ ସର୍ବଦା ନିଜକୁ ଅନ୍ୟଠାରୁ ପୃଥକ୍ ମନେକରନ୍ତି । କାହାରି ସହିତ ମିଶିପାରନ୍ତି ନାହିଁ । କୌଣସି ଅନୁଭୂତିରୁ ସେମାନଙ୍କୁ ଆନନ୍ଦ ମିଳେନାହିଁ, କେବଳ ଟିକିଏ ଶାନ୍ତିର ମୁଖୁ ପାଇଁ ଉତ୍କଣ୍ଠିତ ହେଉଥାନ୍ତି ।

ଯେଉଁମାନଙ୍କର ସନ୍ଧାନୀଚକ୍ଷୁ ଅପର ହୃଦୟର ଭାଷାକୁ ପାଠକରିପାରନ୍ତି, ସେମାନେ ଏମାନଙ୍କୁ ଦେଖିଲେ ଭଲରୂପେ ବୁଝିପାରନ୍ତି ଯେ ଏମାନଙ୍କର ଉଦ୍ଦୀପନା, ଆନନ୍ଦ ଓ ହସ ଭିତରେ ଦୀନତାକୁ ଘୋଡ଼ାଇଦେବାର ଗୋଟିଏ ଘୋଡ଼ଣୀ । ସେମାନେ ସାମାନ୍ୟ କଥା ବା ପରିସ୍ଥିତିରେ ବ୍ରତ ତଥା ବିଚଳିତ ହୋଇପଡ଼ନ୍ତି । ଏହା ହେଉଛି ସେମାନଙ୍କ ମାନସିକ ଅସ୍ଥିରତାର ଚିହ୍ନ । ସେମାନେ ପଳାୟନପନ୍ଥୀ, ବାହାରର ଅସଙ୍ଗତି ଓ ଅସ୍ଥିରତା ସହିତ ଅନବରତ ସଂଘର୍ଷ କରିବା ଫଳରେ ତାଙ୍କୁ ଦୁଃଖ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ ।

## ପ୍ରେମର ପ୍ରଭାବ

ପ୍ରକୃତରେ ଦେଖିବାକୁ ଗଲେ, ଆମେ ଯେତିକି ଜାଗ୍ରତ ହେବାପାଇଁ ଆଗେଇଯିବା ସେତିକି ଆମ୍ଭମାନଙ୍କ ଶୂନ୍ୟତା ଅନୁଭୂତ ହେବ । ଆମେ ଅନୁଭବ କରିବା, ଯେତେ ଯେପରି ପ୍ରାଣ କୌଣସି ଏକ ଅହେତୁକ ଦୋଷରେ ସର୍ବଦା ଆନ୍ଦୋଳିତ ହେଉଛି । ମୁକ୍ତିପାଇଁ ଅନ୍ତର ବ୍ୟାକୁଳିତ ହୋଇ ଭାବୁଛି, ଯେତେଯେପରି ଆଉ କିଛି ମହତ୍ କର୍ତ୍ତବ୍ୟ କରିବାର ଆବଶ୍ୟକତା ଥିଲା, କିନ୍ତୁ କରାଯାଇପାରିନାହିଁ । ରାଧାକୃଷ୍ଣନ୍‌ଙ୍କ ମତରେ ମଣିଷର ଏଇ ବିମର୍ଷଭାବ ତାର ମାନସିକ ଦ୍ୱନ୍ଦ୍ୱକୁ ସମାଧାନ କରିବା ଦିଗରେ ଆଗେଇନିଏ । ଏଇ ଅନୁତାପ ହେଉଛି ମଣିଷର ପରମବନ୍ଧୁ, ଯାହାକି ଆତ୍ମାକୁ ଠିକ୍ ବାଟରେ ଚଳାଇ ନେଇପାରେ । ପିତାମାତା

ସେମାନଙ୍କର ଅବୋଧ ସନ୍ତାନଗଣଙ୍କୁ ଯେପରି ଠିକ୍ ବାଟରେ ପରିଚାଳନା କରନ୍ତି, ଏହା ଠିକ୍ ସେଇପରି ।

ଯେଉଁମାନେ ପରପାଇଁ ଅଶ୍ରୁ ମୋଚନ କରନ୍ତି, ଦୁଃଖ ଭୋଗ କରନ୍ତି ଓ ପର ଦୁଃଖରେ ଯାହାର ପ୍ରାଣ କମ୍ପିତ ହୁଏ ସେ ହେଉଛି ପ୍ରକୃତରେ ଈଶ୍ୱରଙ୍କର ଆଶୀର୍ବାଦରପାତ୍ର । ଯେଉଁ ହୃଦୟ ଅପରକୁ ପ୍ରେମ କରିପାରେ, ତାହା ମଧ୍ୟ ପରପାଇଁ ବ୍ୟଥିତ ହୋଇପାରେ । ହୃଦୟ ଯେତିକି କୋମଳ ହେବ ସେତିକି ଅନ୍ୟର ବ୍ୟଥା ଅନୁଭବ କରିପାରିବ । ଯେଉଁମାନଙ୍କର ହୃଦୟ ମହାନ୍ ଓ ପ୍ରଶସ୍ତ, ସେମାନେ ଅନ୍ୟପାଇଁ ଅଧିକ ଭାବରେ ବ୍ୟଥାତୁର । ଜୀବନର ସବୁଠାରୁ ବଳି ପ୍ରିୟ ଓ ମୂଲ୍ୟବାନ୍ ବସ୍ତୁକୁ ଅପରର କଲ୍ୟାଣ ପାଇଁ ତ୍ୟାଗ କରିବାର ଯନ୍ତ୍ରଣା ଭିତରୁ ମଣିଷକୁ ମୁକ୍ତିର ସନ୍ଧାନ ମିଳେ ।

ଯାତନା ହିଁ ଜୀବନର ଧର୍ମ ଓ ଶୂନ୍ୟତା ହିଁ ତାର ସାଥି । ଯେଉଁମାନେ ସେମାନଙ୍କର ଅନ୍ତର୍ନିହିତ ଜୀବନର ସନ୍ଧାନ ପାଇନଥାନ୍ତି ଓ କେବଳ ବାହ୍ୟ ଜୀବନ ଭୋଗ କରୁଥା'ନ୍ତି ସେମାନେ ହୁଏତ ଅପର ପାଇଁ ଯାତନା ଭୋଗିବାରୁ ରକ୍ଷାପାଇପାରନ୍ତି; କିନ୍ତୁ ମନେ ରଖିବାକୁ ହେବ, ଯାତନା ଈଶ୍ୱରଙ୍କର ଦଣ୍ଡ ନୁହେଁ, ବରଂ ଜୀବନପାଇଁ ଏହା ଶୃଙ୍ଖଳାର ଏକ ମାଧ୍ୟମ ।

ଯେତେବେଳେ ଜୀବନରେ ଦୁର୍ଦ୍ଦିନ ଆସେ, ଆମେ ଯେତେବେଳେ ଅନ୍ଧକାରର ସମ୍ମୁଖୀନ ହେଉ, ଆତ୍ମଯନ୍ତ୍ରଣାରେ ଅସ୍ଥିର ହେଉ, ଯେତେ-ବେଳେ ଜୀବନର ସ୍ୱାଦୁ ନଷ୍ଟ ହୋଇଯାଇଥାଏ, ସେତେବେଳେ ଆମେ ଯାତନାପିଷ୍ଟ ହୋଇ କହୁ, "ହେ ଭଗବାନ୍ ତୁମେ କ'ଣ ଅଛ ଏ ସଂସାରରେ ନାହିଁ ! ମୋ'ପାଇଁ ତୁମେ ଏତେ କରୁଣାହୀନ କାହିଁକି ?" ଏହି ବ୍ୟାକୁଳ ନିବେଦନର ଉତ୍ତର ନମିଳିଲେ ଶୂନ୍ୟତା ଆମ୍ଭମାନଙ୍କୁ ଗ୍ରାସକରେ ଓ ଆମ ଚାରିପାଖରେ ପୃଥିବୀ ରସାତଳଗାମୀ ହେଲପରି ଜଣାପଡ଼େ । ଏ ପରିସ୍ଥିତିରେ ଭାଙ୍ଗିପଡ଼ିବାର କୌଣସି କାରଣ ନାହିଁ; ଧୈର୍ଯ୍ୟର ସହିତ ଏହାକୁ ସମ୍ମୁଖୀନ ହେବା ଉଚିତ । ସେହି କାଳ ଝଡ଼ର ମୁକାବିଲା କରିବାର ସାହସ ରଖିବା ଦରକାର । ଆଶା, ଉତ୍ସାହ ଓ ପ୍ରେମ ଉପରେ

ବଞ୍ଚାଇ ରଖି ବଞ୍ଚିରହିବାକୁ ହେବ । ରାଧାକୃଷ୍ଣନ୍‌ଙ୍କ ମତରେ ଏହାହିଁ ହେଉଛି ଯାତନା ଏବଂ ଏହି ଯାତନାର ବିଦ୍ୟାଳୟରୁ ଆମକୁ ପ୍ରକୃତ ଶିକ୍ଷା ଲାଭ କରିବାକୁ ହେବ । ଜୀବନକୁ ବିକଶିତ କରିବା ଦିଗରେ ଏହାହିଁ ପ୍ରକୃଷ୍ଟ ପନ୍ଥା । ଯାତନାକୁ ସହ୍ୟ କରିପାରିବା ଅର୍ଥ ପରିସ୍ଥିତିର ପ୍ରଭାବକୁ ଜୟକରିବା । ଏହା ହୋଇପାରିଲେ ଧରିନେବାକୁ ହେବ ଯେ, ଯାତନା ଓ ପୀଡ଼ନ ହିଁ ମାନବିକତାର ବିକାଶ ପାଇଁ ଈଶ୍ୱରଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ । ଜୀବନରେ ଥରେ ସ୍ଥିରତା ଆସିଗଲେ ଓ ଜୀବନ ଶୃଙ୍ଖଳିତ ହୋଇଗଲେ, ପୀଡ଼ନ ଆଶୀର୍ବାଦରେ ପରିଣତ ହୋଇଯାଏ । ଯାତନାର ପଥ ହେଉଛି ମୁକ୍ତିର ପଥ, ଯାହାକୁ ସ୍ୱେଚ୍ଛାରେ ପ୍ରତ୍ୟେକେ ବାଛିନେବା ଉଚିତ ।

ଆମ ପ୍ରତ୍ୟେକଙ୍କର ଜୀବନ ଅନ୍ୟର ଜୀବନକୁ ବିଭିନ୍ନ ପରିସ୍ଥିତିରେ ସ୍ପର୍ଶ କରିଥାଏ । ସେମାନଙ୍କ ସହିତ ସମ୍ପର୍କ ରଖିବା ଫଳରେ ଆମର ଦୈହିକ ଓ ମାନସିକ ଶକ୍ତି ବୃଦ୍ଧିଲାଭକରେ ଓ ଆମେ ତା' ଭିତରୁ ଆମୋଦ ଓ ପ୍ରେରଣା ଲାଭ କରୁ । ସେମାନଙ୍କ ମଧ୍ୟରୁ ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରିବାରେ ଆମେ କେବେ ବିମୁଖ ହେଉନାହିଁ । ଯେଉଁ ଲୋକମାନେ ଅନ୍ଧକାର ଭିତରେ ଆଲୋକବର୍ତ୍ତିକା ଜାଳନ୍ତି ସେମାନେ ପୃଥିବୀର ଶ୍ରେଷ୍ଠବ୍ୟକ୍ତି । ଆମେ ପ୍ରତି ମୁହୂର୍ତ୍ତରେ ସେମାନଙ୍କର ଆଶୀର୍ବାଦ, ପ୍ରେମ ଓ ସହାନୁଭୂତି ଲାଭକରୁ । ସେମାନଙ୍କର କୋମଳ ଭାବ, ସହାନୁଭୂତି ଓ ଶ୍ରଦ୍ଧା ଶୁଝାଯାଇ ନପାରିଲେ ମଧ୍ୟ ତାଙ୍କ-ଠାରେ ଆମେ କି ପରିମାଣରେ ଋଣୀ ତାହା ମଧ୍ୟ ଅନୁଭବ କରିବାକୁ ଅକ୍ଷମ । ସେମାନେ କେବେହେଲେ କୌଣସି ପୁରସ୍କାର ବା ପ୍ରତିଦାନ ଚାହାନ୍ତି ନାହିଁ । ଯେଉଁମାନଙ୍କ ଭିତରେ ଅନାବିଳ ପ୍ରେମ ଥାଏ ତାହାକୁ ସେମାନେ ଦାନକରିବା ପାଇଁ ସର୍ବଦା ବ୍ୟାକୁଳିତ ହୁଅନ୍ତି । ସେ ତାହା ବିଜ୍ଞାପିତ କରନ୍ତି ନାହିଁ କିମ୍ବା ତା' ବଦଳରେ କିଛି ପ୍ରତିଦାନ ଚାହାନ୍ତିନାହିଁ ।

ପ୍ରେମ ହେଉଛି ଅନ୍ଧ । ଏହା ନ୍ୟାୟ ନୀତିଠାରୁ ଯଥେଷ୍ଟ ଊର୍ଦ୍ଧ୍ୱରେ । ପ୍ରେମିକ ଏହା ଭିତରୁ ସାମାନ୍ୟତମ ଗୁଣର ସୂଚନା ପାଇଲେ ସେ ସର୍ବସ୍ୱ ଦାନକରିଦେବାକୁ ପଛାଏ ନାହିଁ । ଏଥିପାଇଁ ସେ ସମସ୍ତ ଘାତ-ପ୍ରତିଘାତ,

ମାନ-ଅପମାନ, ହାସ-ଉପହାସ ବରଣ କରେ । ତାର ପ୍ରେମ ପାଖରେ କୌଣସି ପ୍ରକାରର ତ୍ୟାଗ ବା ଭକ୍ତି ଯେତେ କିଛୁ ବଡ଼କଥା ନୁହେଁ । ଯେତେବେଳେ ପ୍ରାଣ ଶୃଙ୍ଖଳଗଲି ପରି ଜଣାଯାଏ, ସଂସାର ବନ୍ଧନ ପରି ମନେହୁଏ, ହୃଦୟ ଶୁଷ୍କ ଓ ମସ୍ତିଷ୍କ ଶୂନ୍ୟ ବୋଧହୁଏ, ସେତେବେଳେ ଏକମାତ୍ର ଏଇ ପ୍ରେମହିଁ ଶାନ୍ତି ତଥା ଆନନ୍ଦ ପ୍ରଦାନ କରେ । ଅନ୍ୟ କେହି ଏ ଶାନ୍ତି ଦେଇପାରେନା । ଏହା ମଣିଷକୁ ଏକ ନୂତନ ଜୀବନ ସ୍ରୋତରେ ଭସାଇନିଏ । ପ୍ରେମ ଓ ବନ୍ଧୁତ୍ୱ ଧନସମ୍ପତ୍ତି ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ଏବଂ ଏପରି କି ସ୍ୱାସ୍ଥ୍ୟଠାରୁ ଆଉରି ଅଧିକ ମହତ୍ତର । ସଂସାରର ସବୁଠାରୁ ଗରିବ ବ୍ୟକ୍ତି ଏହାକୁ ଲାଭ କରିବା ଦିଗରେ କୌଣସି ଶକ୍ତି ପ୍ରତିବନ୍ଧକ ସୃଷ୍ଟି କରିପାରେନା । ପ୍ରେମ ଓ ବନ୍ଧୁତା କୌଣସି କ୍ଷମତା ତଥା ସମ୍ପତ୍ତି ଉପରେ ନିର୍ଭର କରେ ନାହିଁ । ପ୍ରକାଶ ପାଇଁ ଏହା ହାତ ପାଦ ଉପରେ ନିର୍ଭର କରେନାହିଁ । ଏହାର ପରମ ପ୍ରକାଶ ହୁଏ ନୟନରେ । ଠିକ୍ ଏ ସ୍ନେହ ସହାନୁଭୂତିଭରା ଗୃହିଣୀ, ଟିକିଏ ହସ ଓ ପଦେ ମିଠାକଥା ଭିତରେ ଏହା ଅନ୍ୟକୁ ଆମୋଦିତ କରେ ।

ମହନୀୟ ବ୍ୟକ୍ତିମାନଙ୍କର ସାମାନ୍ୟ ଇଙ୍ଗିତ କିମ୍ବା ଆଳାପ ଆଲୋଚନା ଅନ୍ୟ ମନରେ ଗଭୀର ପ୍ରଭାବ ପକାଏ । ପ୍ରତ୍ୟେକ ମନୁଷ୍ୟର ହୃଦୟରେ ମାନବିକତା ଓ କୋମଳ ମନୋଭାବ ଅଛି; କିନ୍ତୁ ତାହା ଅବରୁଦ୍ଧ ଅବସ୍ଥାରେ ରହିଥାଏ । କେତେକଙ୍କ ହୃଦୟରୁ ଏହା କ୍ଷୀଣଭାବରେ ନିର୍ଗତ ହେଲେ ମଧ୍ୟ ଆଉ କେତେକଙ୍କ ହୃଦୟରୁ ଆଦୌ ନିର୍ଗତ ହୁଏ ନାହିଁ; କିନ୍ତୁ ମହନୀୟ ବ୍ୟକ୍ତିମାନଙ୍କର ସଂସ୍ପର୍ଶରେ ଆସିଲେ ଏହା ହୃଦୟ ଭିତରେ ଉଦ୍‌ବେଳିତ ହୋଇଉଠେ । ଏହା ଥିଲା ତାଙ୍କର ମତ ।

## ବନ୍ଧୁତ୍ୱପୂର୍ଣ୍ଣ ଜୀବନ

ରାଧାକୃଷ୍ଣନ୍ ବନ୍ଧୁତ୍ୱପୂର୍ଣ୍ଣ ଜୀବନକୁ ସବୁଠାରୁ ବଳି ଉଚ୍ଚ ଆସନ ଦେଉଥିଲେ । ତାଙ୍କ ମତରେ ଦୁର୍ବଳ ଓ ଅସହାୟକୁ ସାହାଯ୍ୟ କରିବା

ମନୋଭାବ ମଣିଷର ବିକଶିତ ପ୍ରକୃତିର ଏକ ଅଙ୍ଗ ହେବା ଉଚିତ । ଆମେ ପ୍ରତ୍ୟେକଙ୍କ ଚିହ୍ନୁ ନାହିଁ, ଅନ୍ୟ ଲୋକ କ'ଣ ବୁଝୁଛି ବା ନବୁଝୁଛି ଜାଣିବା କଷ୍ଟ । ଅନ୍ୟର କାମ ଓ କଥାରୁ ଯାହାକିଛି ଅନୁମାନ କରି-ଯାଇପାରେ; କିନ୍ତୁ ସେମାନଙ୍କର ଚିନ୍ତା, ଭାବନା ଓ ଅର୍ଦ୍ଧଚେତନ ମନର ଅବସ୍ଥା ବିଷୟରେ ଜାଣିବା ସମ୍ଭବ ନୁହେଁ । ମନର ଗୁପ୍ତ ଭାବନା ନିରୂପଣ କରିବାର ଶକ୍ତି ଆମର ନାହିଁ, କିମ୍ବା ଅନ୍ୟର ଅନ୍ତର ଭିତରର ନିଭୃତ କାମନା ଜାଣିବା ମଧ୍ୟ ଅସମ୍ଭବ । ଅନ୍ୟର ଅନୁଭୂତି ଭିତରେ ରହିପାରିଲେ ହୁଏତ ଏହା ଜାଣିବା ବିଶେଷ କଷ୍ଟକର ହେବନାହିଁ । ଆଉ ଗୋଟିଏ କଥା ମନେରଖିବାକୁ ହେବ, ଏ ଜଗତର କାହାର ଜୀବନ ଏପରି ସ୍ୱଚ୍ଛ, କାହାର ଚରିତ୍ର ଏପରି ନିଷ୍କଳଙ୍କ ଯେ ସେ ଅନ୍ୟର ବିଗ୍ୱରକ ରୂପେ ବସିବ ! ଯଦି କୌଣସି ଉପାୟରେ ମଣିଷର ହୃଦୟକୁ ଠିକ୍‌ଭାବରେ ପରୀକ୍ଷା କରିଯାଇପାରନ୍ତା ତା'ହେଲେ ବୋଧହୁଏ ଦଣ୍ଡଲାଭରୁ କେହି ଜଣେ ମଧ୍ୟ ରକ୍ଷାପାଇପାରନ୍ତେ ନାହିଁ । ଆମେ ଅଧିକାଂଶ ପ୍ରାୟ ମୂର୍ଖତା ଭିତରେ ବୁଡ଼ି ରହିଛେ ଓ ଆମର ଅଦମ୍ୟ ଲାଳସା ଆମମାନଙ୍କୁ ଅତି ତଳକୁ ନେଇ ନେଉଛି । ଆମେ ସବୁ ବଣର ପକ୍ଷୀ ପରି ବନ୍ଧନରୁ ରକ୍ଷା ପାଇବା ପାଇଁ ସଦାସର୍ବଦା ଡେଣା ବାଡ଼େଇବାରେ ଲାଗିଛେ ।

ଯେ ପ୍ରକୃତ ମଣିଷ ସେ କାହାରିକୁ ଘୃଣା କରନ୍ତି ନାହିଁ କିମ୍ବା କାହାଠାରୁ ନିଜକୁ ଉଚ୍ଚ ବୋଲି ମନେକରନ୍ତି ନାହିଁ । ଅନ୍ତରର ଗଭୀର-ତମ ପ୍ରଦେଶରେ ପ୍ରତ୍ୟେକେ ଅନୁଭବ କରିବା ଉଚିତ ଯେ, ମଣିଷ ଭିତରେ କୌଣସି ପ୍ରଭେଦ ନାହିଁ । ଅନ୍ୟ ଜଣେ ଯାହା, ସେ ମଧ୍ୟ ତାହା । ଯେ କୌଣସି ଲୋକ ଉତ୍ତେଜନାକାରୀ ପରିସ୍ଥିତି ଭିତରେ ଅପରାଧୀ ହୋଇପାରେ ଓ ପ୍ରେରଣା ଲାଭ କଲେ ନିଜକୁ ଶକ୍ତିମାନ୍ କରିପାରେ, ଏହା ଏକ ସାଧାରଣ ସତ୍ୟ । ଅଜ୍ଞତା ଓ ପରିସ୍ଥିତିର ଗୃପରେ ଅଧିକାଂଶ ନିଜକୁ ରୂପାନ୍ତର କରି ଗଢ଼ିଥାନ୍ତି । ଯଦି ବୋଲି ସବୁ ଲୋକ ଯେ ତାଡ଼ନା ଭିତରେ ବିପଥଗାମୀ ହୁଅନ୍ତି ତା' ନୁହେଁ । ପ୍ରକୃତ ମଣିଷ ନୈତିକତା ବଳରେ ପଶୁ ପ୍ରବୃତ୍ତିରୁ ନିଜକୁ ମୁକ୍ତ କରିପାରେ ।

ମଣିଷ ପ୍ରବୃତ୍ତିର ବଶବର୍ତ୍ତୀ ହେଲେ ତା' ଆଖିରେ ସତ୍ୟ, ସୁକର୍ମ ଓ ବସ୍ତୁର ପ୍ରକୃତ ସ୍ୱରୂପ ଧରାପଡ଼େନ । ସେ ସେତେବେଳେ ଯାହା ଅନୁଭବ କରେ ତାହାହିଁ କରେ ଓ ଯାହା ଭାବେ ତାହାହିଁ ବିଶ୍ୱାସ କରେ । ଯେଉଁମାନେ ମହାନ୍ ବ୍ୟକ୍ତି ସେମାନେ ଯେକୌଣସି ବସ୍ତୁର ଭଲ ଦିଗକୁ ଆଗ ଦେଖନ୍ତି ଓ ମନ୍ଦ ଦିଗକୁ ପରିହାର କରନ୍ତି । ମନେରଖିବାକୁ ହେବ, ସୃଷ୍ଟିର ଚରମ ଦୃଷ୍ଟାନ୍ତ ଓ ଅତି ଘୃଣ୍ୟ ବ୍ୟକ୍ତିର ହୃଦୟରେ ମଧ୍ୟ ଆଧ୍ୟାତ୍ମିକତାର ସ୍ପର୍ଶ ରହିଛି । ଈଶ୍ୱରଙ୍କର ସତ୍ତା ସମସ୍ତଙ୍କ ଭିତରେ ଥିଲେ ମଧ୍ୟ କେବଳ କେତେକଙ୍କ ମଧ୍ୟରେ ତାହା ପ୍ରକାଶିତ ହୋଇଥାଏ ।

ଥରେ ରାଧାକୃଷ୍ଣନ୍‌ଙ୍କର ଦୀର୍ଘ ୨୦ ବର୍ଷର ଜଣେ ବନ୍ଧୁ ତାଙ୍କ ବିଷୟରେ ଏକ ବିଦ୍ରୂପାତ୍ମକ ମତାମତ ଦେବାକୁ ଯାଇ କହିଥିଲେ, "ରାଧାକୃଷ୍ଣନ୍ ! ତମେ ଇମିତି ଜଣେ ଲୋକ ଯେ, ତମର ରାଗିବାର କ୍ଷମତା ନାହିଁ । ବୋକାମି ତମକୁ ଛୁଇଁପାରେନା । ତମେ ସବୁ ବିଦ୍ରୂପକୁ ଆନନ୍ଦରେ ହଜମ କରିଦେଇପାର ।"

ଏହା ଶୁଣିବା ପରେ ରାଧାକୃଷ୍ଣନ୍ ନିଜର ପ୍ରତିକ୍ରିୟା ପ୍ରକାଶ କରିବାକୁ ଯାଇ କହିଥିଲେ, "ମୋ ବିଷୟରେ ବନ୍ଧୁଙ୍କର ଏ ପ୍ରକାର ପର୍ଯ୍ୟବେକ୍ଷଣ ହୁଏତ ମିଥ୍ୟା ନହୋଇପାରେ, ତେବେ ଜଣେ ଭଲ ଓ ମନ୍ଦ ବ୍ୟକ୍ତି ଭିତରେ ପ୍ରଭେଦ କେତେ ତାହା ନିରୂପଣ କରିବା କଷ୍ଟକର । ପ୍ରତ୍ୟେକ ଭଲ, ମନ୍ଦ, ସତ୍ୟ, ମିଥ୍ୟାର ପରିମାଣରେ ପ୍ରଭେଦ ରହିଛି ।"

ରାଧାକୃଷ୍ଣନ୍‌ଙ୍କ ମତରେ ଭଲମନ୍ଦ ଉପରେ ମଣିଷର ଅଦ୍ଭୁତ ଧାରଣା ରହିଛି । ବ୍ୟକ୍ତିଗତ ଦ୍ୱନ୍ଦ୍ୱକୁ ମନ୍ଦ ବୋଲି କୁହାଗଲା ବେଳେ ଗୋଟିଏ ଜାତି ଯୁଦ୍ଧରେ ବୁଡ଼ିଯିବାଟାକୁ ଭଲକାମ ବୋଲି ଗ୍ରହଣ କରାଯାଏ । ନୃଶଂସତା, ବିଶ୍ୱାସଘାତକତା ଓ ଶୋଷଣକୁ କ୍ଷମା କରାଗଲାବେଳେ ଅବାଞ୍ଛିତ ମନ୍ଦବ୍ୟକ୍ତି ସହିତ ସମ୍ପର୍କ ସ୍ଥାପନକୁ ତୀବ୍ର ଭାବରେ ନିନ୍ଦା କରାଯାଏ । ଦେଖିବାକୁ ଗଲେ ଏହା ଏକ ଅପରାଧ ନୁହେଁ—ଦୁର୍ଭାଗ୍ୟ । ଜୀବନର ଅନନ୍ତ ଦୁଃଖ ଯାତନା ପାଇଁ ଅସୀମ ବୁଝାମଣା ଆବଶ୍ୟକ ।

ପାପୀକୁ ଘୃଣା କିମ୍ବା ସମାଲୋଚନା କରିବାର ଆବଶ୍ୟକତା ନାହିଁ । ସେମାନେ ଅପରର ବୁଝାମଣା ଓ ସହନଶୀଳ ମନୋଭାବ ପାଇଁ ଉତ୍କଣ୍ଠିତ । ସେମାନେ ଟିକିଏ ଶାନ୍ତି, ସମ୍ମାନ ଓ ଶ୍ରଦ୍ଧା ଅନ୍ୟଠାରୁ ଆଶା କରନ୍ତି । ଯେତେବେଳେ ସେମାନେ ପୃଥିବୀଦ୍ୱାରା ଘୃଣିତ ହୋଇ ନିଜର ଅପକର୍ମ ପାଇଁ ବିଷାଦଗ୍ରସ୍ତ ଓ ତାଙ୍କର ହୃଦୟ ବିଦୀର୍ଣ୍ଣ, ସେତେବେଳେ ତାଙ୍କର ପ୍ରାଣ ଏପରି ଏକ ଶୁଭେଚ୍ଛୁ ବ୍ୟକ୍ତିକୁ ଖୋଜିବୁଲେ, ଯାହାକୁ ଅନ୍ତର ଦେଇ ସେ ବିଶ୍ୱାସ କରିପାରିବ, ଯାହା ପାଖରେ ଅନ୍ତର ଖୋଲି-ଦେଇପାରିବ, ଯେ ସ୍ନେହ ସହାନୁଭୂତିରେ ସେମାନଙ୍କୁ ଆପଣାର କରି-ନେଇପାରିବ । ସେମାନଙ୍କ ପାଇଁ ମାନବିକ ସ୍ନେହ ଶ୍ରଦ୍ଧାର ଆବଶ୍ୟକତା ଯଥେଷ୍ଟ ଅଧିକ । ସେମାନଙ୍କର ସଂଶୋଧନ ଓ ଶାନ୍ତିପାଇଁ ହୃଦୟଭରା ପ୍ରେମ ଦରକାର—କିନ୍ତୁ ମନେରଖିବାକୁ ହେବ ଦୟା ନୁହେଁ । ଦୟା ହେଉଛି ଘୃଣାର ସଂଶୋଧିତ ରୂପ । ପ୍ରେମ ଓ ଶ୍ରଦ୍ଧା ପରି ତାହା ଶାନ୍ତି ଦେଇ-ପାରେନା କିମ୍ବା ହୃଦୟକୁ ପରିଶୋଧନ କରିପାରେନା । ସେମାନେ କୋମଳତା ଚାହାନ୍ତି । ଅତୀତର ସମସ୍ତ ଗ୍ଲାନିକୁ ପୋଛିଦେଇ ଭବିଷ୍ୟତ ଜୀବନ ପାଇଁ ଏହାହିଁ ପ୍ରେରଣା ଦେଇପାରେ ।

ଜାଣି ଜାଣି ବିନାଶ ପଥରେ ଆଗେଇଯିବାର ଆବଶ୍ୟକତା ନାହିଁ । ମନକୁ ଆଧ୍ୟାତ୍ମିକତା ଆଡ଼କୁ ଟିକିଏ ବଦଳାଇଦେଇ ପାରିଲେ ଅଧଃ-ପତନରୁ ନିଜକୁ ରକ୍ଷା କରାଯାଇ ପାରିବ ଏବଂ ନୂତନ ଭାଗ୍ୟର ଅଭ୍ୟୁଦୟ ହେବ । ପାପପଥରେ ଗଡ଼ିକରି ରସାତଳଗାମୀ ହେବା କିମ୍ବା ଧର୍ମପଥରେ ଯାତ୍ରାକରି ଊର୍ଦ୍ଧ୍ୱକୁ ଉଠିବା—ତାହା ଆମ ନିଜ ଉପରେ ନିର୍ଭରକରେ । ମଣିଷ ଭିତରେ ପ୍ରକୃତ ପରିବର୍ତ୍ତନ ଆଣିବାରେ ପ୍ରେମହିଁ ସାହାଯ୍ୟ କରିଥାଏ—ଏହା ଥିଲା ରାଧାକୃଷ୍ଣନ୍‌ଙ୍କର ମତ ।

ଯେ ପ୍ରକୃତ ବନ୍ଧୁ, ସେ ବନ୍ଧୁର ଦୋଷାଦୋଷ ଓ ଅନିବଶ୍ୱାସକୁ ଦେଖାଇ ଦେଇ ତାର ସଂଶୋଧନ କରିଦିଏ । ଏପରି ଲୋକ ଅଛନ୍ତି, ଯେଉଁମାନେ ସବୁବେଳେ ନୀରବ, କାରଣ ତାଙ୍କର କାହାକୁ କିଛି କହିବାର ନଥାଏ ।

ଆଉ କେତେକ ଲୋକ ଅଛନ୍ତି ସେମାନେ ମଧ୍ୟ ନୀରବ; କାରଣ ନିଜ ହୃଦୟ ଖୋଲିଦେବାପାଇଁ ସେ ଆପଣାର କରି କାହାକୁ ପାଆନ୍ତି ନାହିଁ । ଅତି ମନ୍ଦ ପ୍ରକୃତିର ଲୋକ ମଧ୍ୟ ଉପଯୁକ୍ତ ବନ୍ଧୁ ପାଇଲେ ଅନ୍ତରର ଗଭୀର ଗୂଢ଼ତମ କଥା ଓ ମନର ଅସରନ୍ତି ବ୍ୟଥା ପ୍ରକାଶ କରି ଶାନ୍ତିଲାଭ କରେ । ସେ କଠୋର ବାସ୍ତବତାର ସମ୍ମୁଖୀନ ହେବାକୁ ଭୟ କରେ-ନାହିଁ । ରାଧାକୃଷ୍ଣନ୍ ମଣିଷର ପ୍ରକୃତ ବିଷୟରେ ଏହି ବାସ୍ତବ ସତ୍ୟର ଉଦ୍‌ଘାଟନ କରିଛନ୍ତି । ତାଙ୍କ ମତରେ ମଣିଷ ହୃଦୟ ପ୍ରକୃତରେ ପ୍ରେମମୟ—ତାହା ଘୃଣ୍ୟ ନୁହେଁ । କୌଣସି ବ୍ୟକ୍ତି ମନ୍ଦ ଭାବରେ ଜନ୍ମଲାଭ କରିନଥାଏ । ଏ ସଂସାରରେ ଏପରି କେହି ବ୍ୟକ୍ତି ନାହିଁ, ଯାହାକୁ ଉନ୍ନତ ତଥା ସଂଶୋଧନ କରାଯାଇ ପାରିବ ନାହିଁ । ଚିରଦିନ ପାଇଁ କେହି ହୃଦୟକୁ କଠୋର କରିପାରେନା, କିମ୍ବା ପ୍ରତାରଣା ମଧ୍ୟ କରି-ପାରେନା । ଆତ୍ମାର ସ୍ୱରୂପ ହିଁ ମଣିଷର ପ୍ରକୃତ ରୂପ । ମଣିଷ ତାର ଜୀବନ ପ୍ରତି ଏ ପ୍ରକାର ମନୋଭାବ ପୋଷଣ କରିପାରିଲେ ମାନସିକ ଜଡ଼ତା ଆପେ ଦୂରହୋଇପାରେ ।

ସେଣ୍ଟ୍ ପଲ୍‌ଙ୍କ ମତରେ, "ଯେତେବେଳେ ଅନ୍ୟମାନେ ବିପଥଗାମୀ ସେତେବେଳେ ପ୍ରେମ ମଧ୍ୟରେ ଉତ୍ତାପ ନଥାଏ । ଏଥିପାଇଁ ଦରକାର ଭଲ-ପଣିଆ, ଧୈର୍ଯ୍ୟ, ଅପର ଉପରେ ଆସ୍ଥା ସ୍ଥାପନ । ଏହାର ଅଭାବରେ ପ୍ରେମର ଅର୍ଥ କିଛି ନାହିଁ ।" ଆମେ ଯାହାକୁ ଭଲପାଉ ତାର କୌଣସି କାର୍ଯ୍ୟକୁ ସମାଲୋଚନା କରିବା ଆମ ପକ୍ଷରେ କଷ୍ଟକର । ଯେ ପ୍ରକୃତ ବନ୍ଧୁ ସେ ତାଙ୍କ ବନ୍ଧୁଠାରୁ ସମାଲୋଚନା ଆଶାକରେ ଓ ଏଥିପାଇଁ ମଧ୍ୟ ବ୍ୟାକୁଳତା ପ୍ରକାଶ କରିଥାଏ । ପ୍ରକୃତ ବନ୍ଧୁ ପାଖରେ ଏହା ଏକ ସୁଯୋଗ ଓ ଏହାଦ୍ୱାରା ବନ୍ଧନ ଦୃଢ଼ହୁଏ । ଯେ ପ୍ରକୃତ ବନ୍ଧୁ ସେ ବନ୍ଧୁର ହୃଦୟକୁ କେବଳ ପରୀକ୍ଷା କରେ ନାହିଁ, ଠିକ୍‌ନଶି ଭାବରେ ପରୀକ୍ଷା କରିଥାଏ—ସେ ପରୀକ୍ଷା ଏକ ନିଷ୍ଠୁର ପରୀକ୍ଷା ।

ମାନସିକ ଶାନ୍ତିଲାଭ ପାଇଁ ଓ ଅନ୍ତରର ସମୃଦ୍ଧି ପାଇଁ ଆତ୍ମଜ୍ଞାନର ଆବ-ଶ୍ୟକତା ଯଥେଷ୍ଟ ଅଧିକ । ମଣିଷ ପ୍ରତି କ୍ଷେତ୍ରରେ ନିଜକୁ ଖାପ ଖୁଆଇ

ନେବାର ମନୋବୃତ୍ତି ପ୍ରକାଶ କରିବା ଉଚିତ । ସ୍ୱାର ଅର୍ଥ ନୁହେଁ ଯେ ମାନବିକ ଆଦର୍ଶ ଓ ନୀତିର ବିନିମୟରେ ଏହା କରାଯିବ । ନିଜ ପ୍ରତି ନିଜେ ଅନୁଗତ ହୋଇପାରିଲେ ବିଭିନ୍ନ ପରିସ୍ଥିତି ସହିତ ନିଜକୁ ମିଶାଇ ନେବାର ସୁଯୋଗ ଆମକୁ ମିଳିବ । ନିଜ ସହିତ ଅସହଯୋଗ କରି ଅନ୍ୟ ସହିତ ସହଯୋଗ କରିବା କ'ଣ ସମ୍ଭବ ? ନିଜକୁ ପ୍ରତାରଣା କରିବା ଆଦୌ ଉଚିତ ନୁହେଁ । ଅନ୍ୟକୁ ଠିକ୍ ଭାବରେ ପ୍ରେମକରିନଜାଣିଲେ ତାକୁ ଠିକ୍ ଭାବରେ ଚିହ୍ନି ହୁଏନା—ଏକଥା ଯଦି ସତ୍ୟ ତା'ହେଲେ ଏହା ମଧ୍ୟ ସତ୍ୟ ଯେ ଅନ୍ୟକୁ ଠିକ୍ ଭାବରେ ଚିହ୍ନି ନଜାଣିଲେ ଅନ୍ତରଭରା ପ୍ରେମ ଦିଆଯାଇ ପାରେନା । ଏକ ପ୍ରକାର ଲଜ୍ଜାବୋଧ ଆମକୁ ବନ୍ଧୁତ୍ୱ ସୃଷ୍ଟି ଦିଗରେ ସମୟେ ସମୟେ ପଛାଇଦିଏ । ଆମେ ଅନୁଭବ କରୁ ସତେ ଯେପରି ନିଜେ ନିଜକୁ ଅନ୍ୟ ହାତରେ ଟେକିଦେଉଛୁ । ଆମର ନିଜତ୍ୱ ଭୁଲିଯାଉଛୁ । ଆମେ ଆମର ଦୋଷ ଦୁର୍ବଳତା ଓ ଅଭାବ ଅନଟନକୁ ପଦାରେ ପକେଇ-ଦେଇଛୁ ଓ ବନ୍ଧୁତ୍ୱ ଆଳରେ ନିଜେ ନିଜକୁ ପ୍ରତାରଣା କରୁଛୁ ।

ପ୍ରକୃତ ବନ୍ଧୁ ପାଖରେ ଏ ପ୍ରକାର ଧାରଣାର ସ୍ଥାନ ଆଦୌ ନାହିଁ । ଯାହା ଲୌକିକତା ଦୃଷ୍ଟିରୁ ଅଦ୍ଭୁତ, ଅସାଧାରଣ, ଅନୁଚିତ ଓ କଠୋର, ସମୟରେ ତାହା ହେଉଛି ପ୍ରେମର ପ୍ରକୃତ ସ୍ୱରୂପ । ଅନାବିଳ ବନ୍ଧୁତ୍ୱ ଯେଉଁଠାରେ ଅଛି ସେଠାରେ ଏ ପ୍ରକାର ଅସ୍ୱସ୍ତିର ପ୍ରଶ୍ନ ନାହିଁ, ଯଦି ଥାଏ ତା'ହେଲେ ଏହାକୁ ମାନସିକଦୀନତାର ଚିହ୍ନ ବୋଲି ଧରି-ନେବାକୁ ହେବ । ଯେ ପ୍ରକୃତ ବନ୍ଧୁ, ସେ ଦୋଷଦର୍ଶୀ ହିସାବରେ ମତ ଦିଏନି, କିମ୍ବା ତାର ବିଗ୍ରହ ବିରୁଦ୍ଧାତ୍ମକ ନୁହେଁ । ଆମେ ଯେଉଁ ପ୍ରକାର ଦୋଷ ଦୁର୍ବଳତାର ଶିକାର ତାହା ଥରେ ପ୍ରକାଶିତ ହୋଇଗଲେ ତାର ଶକ୍ତି ଆପେ ନଷ୍ଟହୋଇଯାଏ ।

## ସତ୍ୟ ଓ ବାସ୍ତବତା

"ଆମେ ଯେ ପର୍ଯ୍ୟନ୍ତ ପ୍ରକୃତ ସତ୍ୟ ଓ ବାସ୍ତବତା ମଧ୍ୟରେ ଗତି କରି-ନପାରିବା ସେ ପର୍ଯ୍ୟନ୍ତ ଆମ ଭିତରେ ଶୂନ୍ୟତା ଲାଗିରହିବ ଓ ବାହାର

ଛଳନାମୟ ପର ବୋଧହେବ । ଅବଶ୍ୟ ମନର ଗର୍ବ ପରିହାର କରିବା, ସ୍ୱାର୍ଥ ତ୍ୟାଗ କରିବା ଓ ବାସ୍ତବତାର ନିର୍ମମ ରୂପ ପ୍ରକାଶ କରିବା କମ୍ ଯନ୍ତ୍ରଣାପୂର୍ଣ୍ଣ ତଥା ତ୍ୟାଗର ଚିହ୍ନ ନୁହେଁ; କିନ୍ତୁ ତାହେଲେ ବି ତାହା କାମ୍ୟ । ମହାଭାରତ ଆମକୁ ଶିକ୍ଷା ଦେଉଛି ଯେ, ସତ୍ୟ ଏକ ପରମ ତପସ୍ୟା ଓ ଚରମ ତ୍ୟାଗ । ସତ୍ୟ ଚିରନ୍ତନ ବାସ୍ତବ ଆଉ ମଙ୍ଗଳମୟ । ସତ୍ୟ ଚିର ଶାଶ୍ୱତ । ପ୍ରତ୍ୟେକେ ସେହି ଚିର ସତ୍ୟର ଚରଣ ତଳେ ନତମସ୍ତକ ହେବା ଉଚିତ । ତାହା ହେଉଛି ମଣିଷ ପାଇଁ ଚିର ଆତ୍ମସ୍ୱପ୍ନଳୀ । ସତ୍ୟକୁ ମହାନ୍ କର୍ତ୍ତବ୍ୟ, ମହାନ୍ ତପସ୍ୟା ଓ ମହାନ୍ ଯୋଗ ହିସାବରେ ଗ୍ରହଣ କରିବାକୁ ହେବ । ସତ୍ୟ ହେଉଛି ଅବିନଶ୍ୱର ବ୍ରହ୍ମ । ସତ୍ୟ ଉପରେ ସବୁ ନିର୍ଭର କରେ । ଆଧ୍ୟାତ୍ମିକ ଜୀବନ ତଥା ଚିରସ୍ଥାୟୀ ବନ୍ଧୁତ୍ୱର ଦୃଢ଼ ମୂଳଦୁଆ ହେଉଛି ସତ୍ୟ । ନୈତିକ ନଗ୍ନତା ସହିତ ଏହାର ମେଳ ନଥାଏ ।” ରାଧାକୃଷ୍ଣନ୍‌ଙ୍କର ଏହା ଥିଲା ଅନ୍ତରର ଅନୁଭୂତି ଓ ମର୍ମବାଣୀ ।

ରାଧାକୃଷ୍ଣନ୍‌ଙ୍କର ପ୍ରାଣ ଅଗଣିତ ଦୁଃଖୀ ଓ ନୈରାଶ୍ୟଜର୍ଜରିତ ବ୍ୟକ୍ତିପାଇଁ ସର୍ବଦା କ୍ରନ୍ଦନ କରୁଥିଲା । ସେ କହୁଥିଲେ, “ଆମ ଭିତରେ କେତେଜଣ ଭାଗ୍ୟବାନ୍ ବ୍ୟକ୍ତି ଅଛନ୍ତି ଯେଉଁମାନେ ଦୀନ ଦରିଦ୍ରର ବିଶ୍ୱାସ ନିଜ ପ୍ରତି ଆକର୍ଷଣ କରିପାରିଛନ୍ତି ? କେତେଜଣ ଅଛନ୍ତି ଯେଉଁମାନେ ଅପରର ଜୀବନରୁ ସୃଷ୍ଟିର ରହସ୍ୟ, ସୌନ୍ଦର୍ଯ୍ୟ ଓ ଜୀବନର ଦୁଃଖ ଯାତନା ଅନୁଧ୍ୟାନ କରି ନିଜ ଜୀବନକୁ ନିୟନ୍ତ୍ରଣ କରିଛନ୍ତି ?”

ତାଙ୍କ ମତରେ ନିରାଶ ଓ ପରିତ୍ୟକ୍ତ ବ୍ୟକ୍ତିଠାରେ ବିଶେଷ କିଛି ଗୁଣର ସନ୍ଧାନ ନମିଳିଲେ ମଧ୍ୟ ଭାଗ୍ୟ ତଥା ପରିସ୍ଥିତି ସହିତ ସଂଘର୍ଷ କରିବାର ଅଦମ୍ୟ ଶକ୍ତି ତାଙ୍କ ପାଖରେ ଥାଏ । ସେ ଶକ୍ତି ପରାସ୍ତ ହେଲେ ମଧ୍ୟ ଛିନ୍ନ ହୁଏ ନାହିଁ । ସେମାନଙ୍କର ଆତ୍ମବିଶ୍ୱାସ କେତେ ଅଧିକ, ତାହା କେଉଁଠାରୁ ଏତେ ପରିମାଣରେ ଆସେ, ଅନ୍ୟଠାରେ ତାହା କିପରି ପ୍ରବାହିତ ହୁଏ, ଏସବୁ କଥା ଅମେ ଜାଣିବା କଷ୍ଟକର । ଏ ଶକ୍ତି ଓ ବିଶ୍ୱାସକୁ ଆଖିରେ ଦେଖିହେବ ନାହିଁ କିମ୍ବା କଥାରେ ଶୁଣି ଜାଣିହେବନାହିଁ । କେବଳ ବହି ପଢ଼ିଲେ କିମ୍ବା ଭାବିଲେ ଏ ଶକ୍ତି ବା ବିଶ୍ୱାସ ମିଳେନାହିଁ ।

ଏ ଶକ୍ତି ମଣିଷ ପ୍ରତି ଈଶ୍ୱରଙ୍କର ଏକ ଅନବଦ୍ୟ ଦାନ । ଏ ଦାନର ଅଧିକାରୀ ସମସ୍ତେ ହୋଇପାରନ୍ତି ନାହିଁ କିମ୍ବା ଏହା ଯାହାକୁ ତାହାକୁ ମିଳେ ନାହିଁ । କେବଳ ସନ୍ଦର୍ଭରତ ଜୀବନ ଏ ପ୍ରକାର ଆତ୍ମଶକ୍ତିର ଅଧିକାରୀ ।

ରାଧାକୃଷ୍ଣନ୍ ଭାବୁଥିଲେ ସତେ ଯେପରି ସେଇ ମହାନ୍ ଦାନର କଣିକାଏ ଈଶ୍ୱରଙ୍କଠାରୁ ତାଙ୍କୁ ମିଳିଛି । ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ, "ମୋ ପାଖକୁ ବହୁତ ଯନ୍ତ୍ରଣାଜର୍ଜରିତ ପ୍ରାଣର ପତ୍ର ସବୁ ଆସେ । ସେଥି ମଧ୍ୟରୁ ଅନେକ ଅତ୍ୟନ୍ତ ଦୁଃଖଦାୟକ ଓ ଆଉ କେତେକ ନିରର୍ଥକ । ପତ୍ରଲେଖକମାନେ ସଂସାରର ଦୁଃଖ ଯାତନାରୁ ରକ୍ଷା ପାଇବା ପାଇଁ ବଡ଼ ବ୍ୟଗ୍ର । ବେଳେବେଳେ ମୋର ବନ୍ଧୁ ଓ ଅନେକ ଅପରିଚିତ ବ୍ୟକ୍ତି ମୋ ପାଖକୁ ଦୀର୍ଘ ପତ୍ରମାନ ଲେଖନ୍ତି । ତା' ଭିତରେ ଶୋକର ସାଗର ଉଦ୍‌ବେଳିତ ହେଉଥାଏ । ଅବଶ୍ୟ ଗୋଟିଏ ଦୃଷ୍ଟିରୁ ମୁଁ ନିଜକୁ ଧନ୍ୟ ମନେକରେ ଯେ ସଂସାରର କେତେକ ଅସହାୟ ଓ ଏକାକୀ ଅନୁଭବ କରୁଥିବା ଲୋକମାନଙ୍କର ମୁଁ ଜଣେ ବନ୍ଧୁ ବୋଲି ସେମାନେ ମନେ-କରୁଛନ୍ତି ଓ ସେମାନଙ୍କୁ ମୋର ସ୍ନେହ ସହାନୁଭୂତି ପ୍ରକାଶ କରିବାର ସୁଯୋଗ ମୋତେ ମିଳିଛି । ଏପରି କି ଅନେକ ଘଟଣା ଘଟେ, ଯେତେ-ବେଳେ ଲୋକମାନେ ମୋର ଆଗ୍ରହ ଓ ଆନ୍ତରିକତାକୁ ଠିକ୍ ଭାବରେ ବୁଝନ୍ତି ନାହିଁ । ମୁଁ ଚେଷ୍ଟାକରେ ମୋର ମନୋଭାବକୁ ସେମାନଙ୍କୁ ବୁଝାଇଦେବାକୁ ; କିନ୍ତୁ ସବୁ ଚେଷ୍ଟା ସତ୍ତ୍ୱେ ମୋତେ ବିଫଳ ହେବାକୁ ହୁଏ । ଏଥିରୁ ମୁଁ ଅନୁମାନ କରେ—ବୋଧହୁଏ ଏସବୁ ପରିସ୍ଥିତିକୁ ମୁଁ ଠିକ୍ ଭାବରେ ବିଚକ୍ଷଣତାର ସହିତ ଚଳାଇପାରିଲି ନାହିଁ, ଫଳରେ ଏପରି ଘଟିଲା ।"

ଏଇପରି ବହୁ ଘଟଣାପ୍ରବାହରେ ରାଧାକୃଷ୍ଣନ୍ ବହୁ ଲୋକଙ୍କର ସଂସ୍ପର୍ଶରେ ଆସୁଥିଲେ । ଲୋକଚରିତ୍ର ଅନୁଧ୍ୟାନ ପାଇଁ ତାଙ୍କୁ ଯଥେଷ୍ଟ ସୁଯୋଗ ମିଳୁଥିଲା । ସୁଯୋଗ କିମ୍ବା ଆକସ୍ମିକତା ଉପରେ ତାଙ୍କର ଭିନ୍ନ ମତ ଥିଲା । ସେ ଭାବୁଥିଲେ ଯେ, "ମଣିଷର ଅଭିଳାଷ ସମୂହ ଗୋପନରେ

ଅନ୍ତର୍ନିହିତ ପ୍ରାକୃତିକ ଶକ୍ତିର ମାଧ୍ୟମ ଦେଇ କାର୍ଯ୍ୟ କରୁଥାଏ ଓ ତାହା ପରିପୂର୍ଣ୍ଣ ହେଲେ ମଣିଷ ଭାବେ ତାକୁ ସୁଯୋଗ ମିଳିଯାଇଛି । ଆକସ୍ମିକ-ଭାବରେ ଏହା ଘଟିଗଲା; କିନ୍ତୁ ପ୍ରକୃତିରେ କାମନା ନଥିଲେ ଏହା ଘଟିବା ସମ୍ଭବ ନୁହେଁ ।"

ଅଭିଳାଷ ପଛରେ ଯେଉଁ ପ୍ରବଳ ମାନସିକ ଶକ୍ତି ଥାଏ ତାହା ମଣିଷର ଅଲକ୍ଷ୍ୟରେ ଲକ୍ଷ୍ୟ ପୂରଣ ଦିଗରେ କାର୍ଯ୍ୟ କରୁଥାଏ । ସାଧାରଣ ମନୁଷ୍ୟ ବୁଝିପାରେନା । ସମୟେ ସମୟେ ଏପରି ଘଟଣା ଘଟେ, ଯାହା ଅତି ତୁଚ୍ଛ ହେଲେ ବି ଜୀବନ ବିକାଶରେ ଆଶାତୀତ ଭୂମିକା ନେଇଥାଏ ।

ଏ ବିଶ୍ୱରେ ଆଧ୍ୟାତ୍ମିକ ମାଧ୍ୟାକର୍ଷଣ **(Gravitation)** ଶକ୍ତି ସବୁ କ୍ଷେତ୍ରରେ କାମ କରୁଛି । ଆମ ପ୍ରତି କେତେକ ବ୍ୟକ୍ତି କାହିଁକି ଆକର୍ଷିତ ହୁଅନ୍ତି ଆମେ ତାର କାରଣ କହିପାରିବା ନାହିଁ । ଏହି ପରିବେଶ ଏତେ ଆନନ୍ଦଦାୟକ ହେବାର କାରଣ ସେଇ ଆଧ୍ୟାତ୍ମିକ ଆକର୍ଷଣ ନୁହେଁ କି ? ସୌନ୍ଦର୍ଯ୍ୟ ଅବ୍ୟକ୍ତ । ମନୁଷ୍ୟର ଏଇ ସୌନ୍ଦର୍ଯ୍ୟ ପ୍ରତି ମୋହ କେବଳ ତାର ଅଂଶମାତ୍ର ପ୍ରକାଶ କରିଥାଏ । ଅନେକ ଲୋକ ଶ୍ରଦ୍ଧାଶୀଳ ଅଛି କେତେକ ଶ୍ରଦ୍ଧାହୀନ । ମଣିଷର ଭଲପାଇବା ଓ ନପାଇବା ପଛରେ ତାର ପ୍ରକୃତି ଅଧିକ ଭାବରେ କାମ କରେ । ସେଠାରେ ବିଚାର, ବୁଦ୍ଧି, ଯୁକ୍ତିତର୍କ ବା କାରଣର ପ୍ରଶ୍ନ ନାହିଁ । ରାଧାକୃଷ୍ଣନ୍ଙ୍କ ମତରେ ମଣିଷ ଉପରେ କେତେକ ଆଶ୍ଚର୍ଯ୍ୟଜନକ ଅନୁଭୂତିର ପ୍ରଭାବ ପଡ଼ିଥାଏ ଓ ତାହାଦ୍ୱାରା ଆଶ୍ଚର୍ଯ୍ୟଜନକ ଭାବରେ ଅନ୍ତଃପ୍ରକୃତିର ରୂପ ନିଜ ପାଖରେ ଉଦ୍‌ଘାଟିତ ହୁଏ । ଏହି ଅନୁଭୂତିକୁ ନେଇ ମଣିଷର ଜୀବନ ସାମାଜିକ ପରିବେଶ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୁଏ । ଆମର ଏ ଜୀବନ ଯେଉଁ ପରିମାଣରେ ଜଟିଳ ଓ କଠିନ, ଠିକ୍ ସେଇ ପରିମାଣରେ ସରଳ ତଥା ରସାଳ । ବିଭିନ୍ନ ଅନୁଭୂତି ମନୁଷ୍ୟର ଶ୍ରଦ୍ଧା ତଥା ସମ୍ମାନର ସୂତ୍ର । ଏହା ବିଭିନ୍ନ ପରିସ୍ଥିତିରେ ବିପୁଳ ଆନନ୍ଦ ତଥା ଗଭୀର ଦୁଃଖ ମଧ୍ୟ ଦେଇଥାଏ । ଜୀବନ ସହିତ ଏହାର ବନ୍ଧନ ଅଚ୍ଛେଦ୍ୟ । ଏହାଦ୍ୱାରା ଭାଗ୍ୟ ନିୟନ୍ତ୍ରିତ ହୁଏ ।

ଥରେ ରାଧାକୃଷ୍ଣନ୍ କଥା ପ୍ରସଙ୍ଗରେ କହିଥିଲେ, "ମୋ ଜୀବନରେ ଅନେକ ଦୁଃଖ କଷ୍ଟ ଓ ଯାତନା ଅଛି, ତା' ସତ୍ତ୍ୱେ ମୁଁ ଆଶାତୀତ ଭାବରେ ଆଶୀର୍ବାଦ ଲାଭ କରିଛି । ସୁଖ ସୌଭାଗ୍ୟ ମଧ ମୋତେ ମିଳିଛି । ଅନ୍ୟ-ମାନଙ୍କଠାରୁ ମିଳୁଥିବା ସ୍ନେହ ଶ୍ରଦ୍ଧା ଓ ସହାନୁଭୂତିର ଏହା ପରିଣାମ । ସେମାନେ ଏଥିପାଇଁ ପ୍ରକୃତରେ ଧନ୍ୟବାଦାର୍ହ । ଦେଖିବାକୁ ଗଲେ ଗାନ୍ଧି, ବୁଦ୍ଧ ଓ ଖ୍ରୀଷ୍ଟଙ୍କ ପରି ମହାମନୀଷୀମାନଙ୍କଠାରୁ ଆରମ୍ଭ କରି ଆହୁରି ତଳ ଶ୍ରେଣୀର ଲୋକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ କିଛି ନା କିଛି ଦୋଷ-ଦୁର୍ବଳତା ଅଛି । ତଥାପି ସେମାନେ ମାନବିକତାର ପଥକୁ ସେମାନଙ୍କ ଦାନଦ୍ୱାରା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସମୁଜ୍ଜ୍ୱଳ କରିଛନ୍ତି । ଏହା ଫଳରେ ମଣିଷର ଜୀବନଯାତ୍ରା ସୁସ୍ଥ ଓ ସରଳ ହୋଇଛି । ଆମେ ଯଦି ସେଇ ପୁଣ୍ୟାତ୍ମାମାନଙ୍କର ଜୀବନର ଗତିକୁ ଅଳ୍ପ ପରିମାଣରେ ହେଉନା କାହିଁକି ଅନୁସରଣ କରିପାରନ୍ତେ ତା'ହେଲେ ଆମେ ଦୀନଦୁଃଖୀର ସେବା ପାଇଁ ଆଗେଇଯାଇପାରନ୍ତେ । ଜୀବନର ଅଭାବବୋଧ ତାର ସ୍ଥିତି ଉପରେ ଏପରି ଏକ ଛାୟା ବିସ୍ତାର କରିଥାଏ, ଯାହାଦ୍ୱାରା ମଣିଷ ମଣିଷର ଦୁଃଖ-ଯାତନାର ଅଂଶୀଦାର ହେବାକୁ ଇଚ୍ଛା କରେନାହିଁ କିମ୍ବା ଦୁଃଖୀର ଦୁଃଖ ଦୂର କରିବାପାଇଁ ଆଗେଇ ଆସେନାହିଁ ।

ଅନ୍ୟର ମୁହଁରେ ହସ ଫୁଟାଇ, ଅନ୍ୟର ପ୍ରାଣରେ ଟିକିଏ ଶାନ୍ତି ଦେଇ, ଅନ୍ୟକୁ ଆମୋଦିତ କରାଇ ଓ ତା' ଭିତରେ ଆଶା ବିଶ୍ୱାସ ଉଦ୍ଭାସିତ କରାଇ ଯଦି ଜଣେ ନୀରବରେ ଜୀବନ ବିତାଇଦେବାକୁ ଚାହେଁ ତା'ହେଲେ କ୍ଷତି କ'ଣ ?"

ନ ତ୍ୱହଂ କାମୟେ ରାଜ୍ୟଂ ନ ସ୍ୱର୍ଗଂ ନ ପୁନର୍ଭବଂ
କାମୟେ ଦୁଃଖ ତପ୍ତାନାଂ ପ୍ରାଣୀନାଂ ଅର୍ତ୍ତିନାଶନଂ ।

(ଭଗବଦ୍‌ଗୀତା)

# ଏକ ମହନୀୟ ଦାୟିତ୍ୱ

ସେତେବେଳକୁ ରାଧାକୃଷ୍ଣନ୍ ଥିଲେ କଲିକତା ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ । ତାଙ୍କର ସୁନାମ ସାରା ଦେଶରେ ପ୍ରସାରିତ ହୋଇସାରିଥିଲା । ବିଦେଶରେ ମଧ୍ୟ ସେ ସୁନାମ ଅର୍ଜନ କରିଥିଲେ । ତାଙ୍କର କର୍ତ୍ତବ୍ୟନିଷ୍ଠା, ବିଦ୍‌ବତ୍ତା, ବାଗ୍ମିତା ସମସ୍ତଙ୍କୁ ମୁଗ୍‌ଧ କରିଥିଲା । ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ପଦପାଇଁ ଦିନେ ଅକସ୍ମାତ୍ ଭାବରେ ସେ ଏକ ନିମନ୍ତ୍ରଣ ପାଇଥିଲେ । କଲିକତା ବିଶ୍ୱବିଦ୍ୟାଳୟର ଆକର୍ଷଣୀୟ ପଦବୀ ତ୍ୟାଗ କରି ସେ ଏହି ନୂତନ ଦାୟିତ୍ୱ ବହନ କରିବେ ବୋଲି କିଏ ବା ଭାବିଥିଲା ? ତାଙ୍କୁ ପଦପଦବୀ, କ୍ଷମତା ଓ ଅର୍ଥ ବଶୀଭୂତ କରିପାରେ ନାହିଁ । ବହୁ ଜନର ଅଭିଳାଷ ଓ ଶୁଭେଚ୍ଛାକୁ ସମ୍ମାନ ଦେବା ତାଙ୍କର କର୍ତ୍ତବ୍ୟ । ଏହି ଦୃଷ୍ଟିରୁ ସେ ନୂତନ ଦାୟିତ୍ୱ ତୁଲାଇବାକୁ ସ୍ୱୀକୃତି ଦେଲେ; କିନ୍ତୁ କଲିକତା ବିଶ୍ୱବିଦ୍ୟାଳୟରୁ ତାଙ୍କୁ ମୁକ୍ତି ମିଳିଲା ନାହିଁ । ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ପଦ ଗ୍ରହଣ କରି ମଧ୍ୟ କଲିକତା ବିଶ୍ୱ-ବିଦ୍ୟାଳୟକୁ ପ୍ରତି ସପ୍ତାହରେ କର୍ତ୍ତବ୍ୟ ତୁଲାଇବାକୁ ଆସୁଥିଲେ । ଅବଶ୍ୟ ଏହା ତାଙ୍କର ଆଇନଗତ ବନ୍ଧନ ନଥିଲା ।

କୁଳପତି ହିସାବରେ ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ଏକ ନବ ଜୀବନ ଦାନ କରିଥିଲେ । ଆର୍ଯ୍ୟ ପରମ୍ପରାକୁ ଆଖି ଆଗରେ ରଖି ବିଶ୍ୱବିଦ୍ୟାଳୟର ଅସୁମାର ସଂସ୍କାର କରାଯାଇଥିଲା । ତାଙ୍କ ଭିତରେ ପ୍ରାଦେଶିକ ସଂକୀର୍ଣ୍ଣତା ନଥିଲା । ସେ ସାରା ଭାରତରୁ ଯୋଗ୍ୟ ଅଧ୍ୟାପକମାନଙ୍କୁ ଆଣି ତାଙ୍କ ବିଶ୍ୱ-ବିଦ୍ୟାଳୟର ଗୌରବ ବୃଦ୍ଧି କରିଥିଲେ । ସବୁ କଥା ଉପରେ ତାଙ୍କର ଉଦାର ମନୋଭାବ ରହିଥିଲା । ବିଶ୍ୱବିଦ୍ୟାଳୟର ପୁସ୍ତକାଗାର ପୂର୍ବେ କେବଳ କେତେକ ପୁସ୍ତକର ଅସ୍ୱାସ୍ଥ୍ୟକର ନିବାସ ଥିଲା; କିନ୍ତୁ ସେ ତାର ବହୁତ ପରିବର୍ତ୍ତନ କରି ତାହାକୁ ଏକ ଜ୍ଞାନ ଭଣ୍ଡାରରେ ପରିଣତ କରିଥିଲେ ।

ଛାତ୍ରାବାସର ସଂସ୍କାର ମଧ୍ୟ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଛାତ୍ରମାନଙ୍କ ମଧ୍ୟରେ କିପରି ଜାତୀୟ ସଂହତି ସୃଷ୍ଟି ହେବ ଓ ସେମାନେ ମାନବିକ ଗୁଣରେ ମଣ୍ଡିତ ହୋଇପାରିବେ ସେଥିପାଇଁ ସେ ଏକ ସୁସ୍ଥ ସ୍ନେହପୂର୍ଣ୍ଣ ଆଦର୍ଶମୟ ପରିବେଶ ସୃଷ୍ଟି କରିଥିଲେ । ଜନସେବା, ଏକତା ଓ ପ୍ରେମ ଏହାର ମୂଳମନ୍ତ୍ର ଥିଲା ।

ପ୍ରଶାସନିକ ଦକ୍ଷତା ବଳରେ ସେ ଛାତ୍ର ଓ ଶିକ୍ଷକମାନଙ୍କ ମଧ୍ୟରେ ଏକ ସୁନ୍ଦର ପରମ୍ପରା ସୃଷ୍ଟି କରିଥିଲେ । ପ୍ରତ୍ୟେକର ଅଭାବ ଅସୁବିଧା ଭଲମନ୍ଦ ସେ ମାନବିକତା ଦୃଷ୍ଟିକୋଣରୁ ବିଚାର କରୁଥିଲେ । ଅତି ଅଳ୍ପ ସମୟ ମଧ୍ୟରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ରୂପ ବଦଳିଗଲା । ସେ ଥିଲେ ଶିକ୍ଷକ, ଛାତ୍ର ଓ ଜନତାର ପ୍ରିୟ ବନ୍ଧୁ, ପରିଚାଳକ ଓ ଦାର୍ଶନିକ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଅତି କ୍ଷୁଦ୍ର ସ୍ନେହପୂର୍ଣ୍ଣ ବ୍ୟବହାରଦ୍ୱାରା ସେ ପରିବେଶକୁ ମହାନ୍ତର କରିପାରୁଥିଲେ ।

ଅଳ୍ପଦିନ ମଧ୍ୟରେ ତାଙ୍କର ଯାଦୁକର ସ୍ପର୍ଶ ପାଇଁ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ରୂପ ପରିବର୍ତ୍ତିତ ହେଲା । ସାରା ଭାରତରେ ଏହାର ଖ୍ୟାତି ବଢ଼ିଗଲା । ଫୁଲଟିଏ ଫୁଟିଲେ ତାର ମହକ ଲୁଚିରହେନା । ତାହା ଦିଗବିଦିଗ ଆମୋଦିତ କରେ । ଠିକ୍ ସେଇଆ ହେଲା । ସେ ଫୁଲଟିକୁ ଶିରୋମଣି କରିବାକୁ ବହୁ ଲୋକଙ୍କର ଦୃଷ୍ଟି ପଡ଼ିଲା ।

ସେତେବେଳେ ପଣ୍ଡିତ ମଦନମୋହନ ମାଳବ୍ୟ ଜଣେ ଶ୍ରେଷ୍ଠ ଜନସେବକ, ତ୍ୟାଗୀ ଓ ମହାନ୍ ବ୍ୟକ୍ତି ଭାବରେ ସୁପରିଚିତ ଥିଲେ । ସେ ଥିଲେ ବାରଣାସୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା । ହିନ୍ଦୁ ଆଦର୍ଶ, ପରମ୍ପରା ଓ ଧର୍ମର ପ୍ରତିଷ୍ଠା ପାଇଁ ସେ ଏହି ବିଶ୍ୱବିଦ୍ୟାଳୟକୁ ରୂପଦାନ କରିଥିଲେ । ୧୯୩୯ ମସିହାର କଥା । ସେତେବେଳକୁ ସେ ରୋଗଗ୍ରସ୍ତ ହୋଇ ବିଶ୍ୱବିଦ୍ୟାଳୟର ପରିଚାଳନା ବ୍ୟବସ୍ଥା ବୁଝିବାକୁ ଅସମର୍ଥ ହେଲେ । କିଏ ଏହି ଗୁରୁଦାୟିତ୍ୱ ତୁଲାଇ ପାରିବ ସେ ସର୍ବଦା ଚିନ୍ତା କରୁଥାନ୍ତି । ଶେଷରେ ବହୁ ବିଚାର ଆଲୋଚନା ପରେ ସେ ରାଧାକୃଷ୍ଣନ୍‌ଙ୍କୁ

ଯୋଗ୍ୟ ବ୍ୟକ୍ତି ହିସାବରେ ସ୍ଥିରକଲେ । ଏ ପ୍ରସ୍ତାବ ତାଙ୍କୁ ଦେବେ କିପରି ? ସେ ଗୋଟିଏ ବିଶ୍ୱବିଦ୍ୟାଳୟ ଛାଡ଼ି ଏହି ନିମନ୍ତ୍ରଣ ରକ୍ଷା କରିବେ କି ? ଏ ପ୍ରଶ୍ନ ମାଲବ୍ୟଙ୍କ ମନକୁ ଆନ୍ଦୋଳିତ କଲା ।

ସେ ଦିନେ ଖବର ପାଇଲେ, ରାଧାକୃଷ୍ଣନ୍ କଲିକତା ବିଶ୍ୱବିଦ୍ୟାଳୟକୁ ତାଙ୍କ କର୍ତ୍ତବ୍ୟ ସମ୍ପାଦନ ପାଇଁ ଆସିଛନ୍ତି । ମାଲବ୍ୟଜୀ ଚିଠିପତ୍ର ନଲେଖି ସେଇପରି ତ୍ୱରିତ ଅବସ୍ଥାରେ କଲିକତାରେ ଯାଇ ପହଞ୍ଚିଲେ । ରାଧାକୃଷ୍ଣନ୍ ଯେତେବେଳେ ଖବର ପାଇଲେ ଯେ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ପରି ମହାନ୍ ବ୍ୟକ୍ତି ତାଙ୍କୁ ସାକ୍ଷାତ କରିବା ପାଇଁ ଆସିଛନ୍ତି, ସେ ବିସ୍ମିତ ଓ ଆବେଗର ସହିତ ନିଜେ ଯାଇ ସାକ୍ଷାତ କଲେ । ମାଲବ୍ୟଜୀ ତାଙ୍କୁ ଦେଖିଲାକ୍ଷଣି ଆନନ୍ଦରେ କୋଳାଗ୍ରତ କରି କହିଲେ, "ତୁମକୁ କିଏ ଦେଖିବ ବୋଲି ଆସିଲି । କୃଷ୍ଣ ଦର୍ଶନ କ'ଣ ସମସ୍ତଙ୍କ ଭାଗ୍ୟରେ ମିଳେ ?" ରାଧାକୃଷ୍ଣନ୍ ସ୍ୱଭାବ ସୁଲଭ ସରଳତା, ବିନମ୍ର ଓ ଲଜ୍ଜାରେ ମଉଳିପଡ଼ି କହିଲେ, "ମୋର ସୌଭାଗ୍ୟ, ମୁଁ ଆପଣଙ୍କ ଦର୍ଶନ ପାଇଛି । ମୋତେ ନିର୍ଦ୍ଦେଶ ଦିଅନ୍ତୁ କ'ଣ କରିପାରିବି !"

"ହିଁ ନିଶ୍ଚୟ କରିପାରିବ—କିନ୍ତୁ ପାରିବ କି ନାହିଁ ସେକଥା ବିଗ୍ଭର କରିବାର ଭାର ତୁମ ଉପରେ । ମୋର ଗୁରୁଦାୟିତ୍ୱ ତୁମକୁ ବହନ କରିବାକୁ ହେବ । ତୁମେ ହେବ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି । କୃଷ୍ଣ କେତେବେଳେ କାହାକୁ ନିରାଶ କରିନାହାନ୍ତି, ତୁମେ କ'ଣ ନିରାଶ କରିଦେବ ?"

ରାଧାକୃଷ୍ଣନ୍ ହତବାକ୍ ହୋଇ ପଣ୍ଡିତ ମାଲବ୍ୟଙ୍କ ମୁହଁକୁ ଗ୍ଭହିଁ ରହିଲେ । ହଠାତ୍ ତାଙ୍କ କଣ୍ଠରୁ ଏକ ନମ୍ର ସ୍ୱୀକୃତି ମିଳିଲା । ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ଭଳି ବ୍ୟକ୍ତିତ୍ୱ ପାଖରେ ନାହିଁକରିଦେବାର ଶକ୍ତି ରାଧାକୃଷ୍ଣନ୍‌ଙ୍କର ନଥିଲା । ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ବିଦାୟ ନେଇ ଆଉ ଏକ ମହତ୍ତର ଜାତୀୟ ଗୁରୁଦାୟିତ୍ୱ ସମ୍ପାଦନ କରିବାକୁ ବାରଣାସୀ ଆସିଲେ । ଏହା ସତ୍ତ୍ୱେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ସମ୍ପର୍କ ଛିନ୍ନ କରି- ନଥିଲେ । ହିନ୍ଦୁ ବିଶ୍ୱବିଦ୍ୟାଳୟର ଗୁରୁଦାୟିତ୍ୱ ସହିତ ପୂର୍ବପରି କଲିକତା

ବିଶ୍ୱବିଦ୍ୟାଳୟକୁ ସେ ଯିବାଆସିବା କରି ଉଭୟ କର୍ତ୍ତବ୍ୟ ତୁଲାଉଥିଲେ । ହିନ୍ଦୁ ବିଶ୍ୱବିଦ୍ୟାଳୟରେ ସେ କୁଳପତି ଭାବରେ ତାଙ୍କର ବେତନ ଗ୍ରହଣ ନକରି ଅବୈତନିକ ଭାବରେ କାର୍ଯ୍ୟ କରିବାକୁ ପସନ୍ଦ କରିଥିଲେ ।

## ଜାତୀୟ ମହାସ୍ରୋତରେ ରାଧାକୃଷ୍ଣନ୍

ଭାରତର ଏକ ସନ୍ଧିକ୍ଷଣ ମୁହୂର୍ତ୍ତ । ଇଂରେଜ ଶାସନ ବିରୁଦ୍ଧରେ ସାରା ଦେଶରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହୋଇଛି । ଦେଶର ଆବାଳ-ବୃଦ୍ଧ-ବନିତା ସମସ୍ତେ ମୁକ୍ତିର ମନ୍ତ୍ର ନେଇ ସ୍ୱାଧୀନତା ପଥରେ ଆଗେଇ-ଚାଲିଥାନ୍ତି । ଜାତିର ପିତା ମହାତ୍ମା ଗାନ୍ଧି ଥିଲେ ସେମାନଙ୍କର କର୍ଣ୍ଣଧାର। ଜାତୀୟ ଜୀବନରେ ସେତେବେଳେ ବହୁ ମହାନ୍ ତ୍ୟାଗବୀର ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ନେଇ ମୁଣ୍ଡଟେକିଥିଲେ—ସେମାନଙ୍କ ମଧ୍ୟରେ ଗାନ୍ଧିଜୀ ଥିଲେ ସାର୍ବଭୌମ ସୂର୍ଯ୍ୟ ଓ ଅନ୍ୟାନ୍ୟ ବରେଣ୍ୟ ନେତୃବୃନ୍ଦ ତାଙ୍କର କକ୍ଷ ପଥରେ ଉପଗ୍ରହ ପରି ବିଚରଣ କରୁଥିଲେ । ଜବାହାରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ସୁଭାଷଚନ୍ଦ୍ର, ରାଜାଜୀ, ବିନୋବା ଭାବେ, ପଣ୍ଡିତ ମଦନମୋହନ ମାଲବ୍ୟ ପ୍ରଭୃତି ମହାନ୍ ବ୍ୟକ୍ତିତ୍ୱ ଗାନ୍ଧିଜୀଙ୍କ ପ୍ରେରଣା ନେଇ ସ୍ୱାଧୀନତା ପଥରେ ସାରା ଦେଶବାସୀଙ୍କୁ ପରିଚାଳନା କରୁଥିଲେ ।

ଦ୍ୱିତୀୟ ମହାଯୁଦ୍ଧ ସମୟ । ୧୯୩୮-୩୯ ମସିହାର ଘଟଣା । ଇଂରେଜମାନେ ଏ ଯୁଦ୍ଧର ପକ୍ଷଭୁକ୍ତ ଥିଲେ । ସେତେବେଳେ ଭାରତର ବଡ଼ଲାଟ ଥିଲେ ଲର୍ଡ଼ ଲିନ୍‌ଲିଥ୍‌ଗୋ ଓ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଥିଲେ ଚର୍ଚ୍ଚିଲ । ଭାରତୀୟ ନେତାମାନଙ୍କର ସ୍ୱୀକୃତି ନନେଇ ସେ ଭାରତକୁ ଯୁଦ୍ଧ ମୁହଁକୁ ଠେଲିଦେଲେ । ଭାରତୀୟ ଜାତୀୟ କଂଗ୍ରେସ ଏହାର ତୀବ୍ର ପ୍ରତିବାଦ କରି ଯୁଦ୍ଧରେ ଯୋଗଦେବାକୁ ଅଗ୍ରାହ୍ୟ କରିଦେଇଥିଲେ । ରାଧାକୃଷ୍ଣନ୍‌ଙ୍କର ତୀକ୍ଷ୍ଣଦୃଷ୍ଟି ସେତେବେଳେ ଜାତୀୟ ସଂଗଠନ ଉପରେ ରହିଥିଲା ।

ମହାତ୍ମା ଗାନ୍ଧୀଙ୍କ ବ୍ୟକ୍ତିତ୍ୱର ମହନୀୟତା ରାଧାକୃଷ୍ଣନ୍‌ଙ୍କୁ ଆକର୍ଷଣ କରିଥିଲା । ଅବଶ୍ୟ ଜଣେ ଦର୍ଶନ ଅଧ୍ୟାପକ ହିସାବରେ ତାଙ୍କର ଖ୍ୟାତି ସାରା ଦେଶରେ ସେତେବେଳେ ଥିଲା । ସେ ମହାତ୍ମା ଗାନ୍ଧିଙ୍କ ସଂସ୍ପର୍ଶରେ ଆସି ନଜର ଚିନ୍ତାଧାରାକୁ ଜାତୀୟ ଜୀବନ ସହିତ ମିଶାଇ ଦେଇଥିଲେ । ଅନ୍ୟାନ୍ୟ ରାଜନୀତିଜ୍ଞମାନଙ୍କ ପରି ସେ ଜଣେ ପେଶାଦାର ରାଜନୀତିଜ୍ଞ ନହେଲେ ମଧ୍ୟ ଭାରତର ସ୍ୱାଧୀନତା ସଂଗ୍ରାମର ସେ ଜଣେ ପ୍ରଧାନ ପୃଷ୍ଠ-ପୋଷକ ଥିଲେ । ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ପରାଧୀନତା ଭାରତ ପାଇଁ ଏକ ପ୍ରାୟଶ୍ଚିତ୍ତ ଯୋଗ୍ୟ ଅଭିଶାପ । ଭାରତୀୟ ସଭ୍ୟତା, ସଂସ୍କୃତି, ସଂହତି ଓ ନଜତ୍ୱର ସବୁଜ ଫସଲ ପରାଧୀନତାର ହିଂସ୍ର ପ୍ରସ୍ରବଣରେ ବଞ୍ଚିପାରିବ ନାହିଁ । ଏଥିପାଇଁ ଆବଶ୍ୟକ ସ୍ୱାଧୀନତାର ଶୀତଳ ଗଙ୍ଗା—ଯାହା ଜାତି ବୃକ୍ଷରେ ଛଳଛଳ କଳକଳ ନାଦରେ ପ୍ରବାହିତ ହୋଇ ଜାତୀୟ ଜୀବନକୁ ଉଦ୍‌ବୁଦ୍ଧ କରିବ ।

ସେ ଥିଲେ ଜାତୀୟତାବାଦର ବାହକ ଓ ତାଙ୍କ ଲେଖା ମାଧ୍ୟମରେ ସେ ଜାତୀୟଭାବ ପ୍ରଚାର କରିଥିଲେ । ଦେଶପ୍ରେମଭାବ ବହନକରି ଯେଉଁ ଲେଖାଗୁଡ଼ିକ ସେତେବେଳେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା, ତାହା ଥିଲା ତାଙ୍କ ସ୍ୱଦେଶ ପ୍ରେମର ଚିହ୍ନ ।

ରାଧାକୃଷ୍ଣନ୍ ସ୍ୱଦେଶୀ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମର ଜଣେ ନୀରବ ସୈନିକ ଥିଲେ । ଇଂରେଜ ସରକାର ତାଙ୍କର ମୌନତାକୁ ଠିକ୍ ଭାବରେ ମାପିପାରିନଥିଲେ ଓ ତାଙ୍କର ଧାରଣା ଥିଲା ଯେ ରାଧାକୃଷ୍ଣନ୍ ଇଂରେଜମାନଙ୍କର ସମର୍ଥକ । ଇଂରେଜମାନଙ୍କର ଏ ପ୍ରକାର ଭ୍ରମପୂର୍ଣ୍ଣ ଧାରଣା ରାଧାକୃଷ୍ଣନ୍‌ଙ୍କୁ ସାହାଯ୍ୟ କରିଥିଲା ।

ମହାତ୍ମା ଗାନ୍ଧୀ ତାଙ୍କର ଦର୍ଶନତତ୍ତ୍ୱ ଓ ପାଣ୍ଡିତ୍ୟ ଆଡ଼କୁ ଆକର୍ଷିତ ହୋଇଥିଲେ । ରାଧାକୃଷ୍ଣନ୍‌ଙ୍କର ଗୀତାଭାଷ୍ୟ ଗାନ୍ଧିଜୀଙ୍କୁ ମୁଗ୍ଧ କରିଥିଲା । ତାଙ୍କର ୭୯ତମ ଜନ୍ମଦିବସରେ ସେ ଗୋଟିଏ ପୁସ୍ତକ ରାଧାକୃଷ୍ଣନ୍‌ଙ୍କଠାରୁ ଉପହାର ପାଇଥିଲେ, ତାହା ଥିଲା ଦେଶଭକ୍ତିର ଉଜ୍ଜ୍ୱଳ ସ୍ୱାକ୍ଷର ।

ରାଧାକୃଷ୍ଣନ୍‌ଙ୍କର ବହୁ ଲେଖା ବିଦେଶୀ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା । ସେ ଲେଖାଗୁଡ଼ିକରେ ଭାରତୀୟ ଜୀବନଦର୍ଶନ ସୁନ୍ଦର ଭାବରେ ଫୁଟିଥିଲା । ବିଦେଶର ଲୋକମାନେ ଭାରତ ବିଷୟରେ ଯେତିକି ନୂତନ ଆଲୋକ ପାଉଥିଲେ, ସେତିକି ଭାରତର ମହାନତ୍ୱତା ଅନୁଭବ କରୁଥିଲେ । ପାଶ୍ଚାତ୍ୟ ଦେଶମାନଙ୍କରେ ଭାରତର ମର୍ଯ୍ୟାଦା ବଢ଼ୁଥିଲା । ପରାଧୀନ ଭାରତର ଦୁଃଖ ଦୁର୍ବିପାକ ପ୍ରତି ବିଶ୍ୱ ଜନମତ ସହାନୁଭୂତିଶୀଳ ହେଉ-ଥିଲା । ଯେଉଁ ଭାରତବର୍ଷ ନୈତିକତାର ଅନୁଶାସନଦ୍ୱାରା ସାରା ପୃଥିବୀକୁ କେଉଁ ଅନାଦିକାଳରୁ ଶାସନ କରିଆସିଛି, ସେ ରାଜନୈତିକ ସ୍ୱାଧୀନତା ହରାଇ ଶାସିତ ହୋଇ ରହିବାକୁ ନିଜେ ଯେପରି ଚାହୁଁ ନଥିଲା, ବିଶ୍ୱବାସୀ ମଧ୍ୟ ଚାହୁଁ ନଥିଲେ । ଫଳରେ ଭାରତ ତା'ର ଲକ୍ଷ୍ୟ ହାସଲ କରିବା ଦିଗରେ ଅନ୍ୟ ଦେଶମାନଙ୍କର ସମର୍ଥନ ଲାଭ କରିଥିଲା । ଇଂରେଜମାନେ ଭାରତୀୟମାନଙ୍କର ଆତ୍ମବଳ, ପ୍ରବଳ ପ୍ରତିରୋଧଶକ୍ତି, ଏକତା ଓ ଦୃଢ଼ ସଂଗଠନ ପାଖରେ ଶେଷରେ ମୁଣ୍ଡ ନୁଆଁଇଲେ । ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ଭାରତ ତାର ବହୁ ଇପ୍‌ସିତ ଲକ୍ଷ୍ୟ ହାସଲ କଲା ।

## ଲୌହ ମାନବର ଆଖିରୁ ଲୁହ

ପ୍ରଧାନମନ୍ତ୍ରୀ ନେହେରୁ ଓ ଅନ୍ୟମାନଙ୍କ ଭିତରେ ଖୁବ୍ ବିଚାର ଆଲୋ-ଚନା ଚାଲିଥାଏ । ଭିନ୍ନ ରାଜନୈତିକ ବ୍ୟକ୍ତିମାନଙ୍କର ବିବେଚନା ସହିତ ଜବାହାରଲାଲ ନେହେରୁଙ୍କର ଦୃଷ୍ଟିକୋଣ ଖାପଖାଉନି । ସେତେବେଳେ ଚୀନ୍ ଓ ରୁଷିଆରେ ରାଷ୍ଟ୍ରଦୂତ ପଦ ଖାଲିଥାଏ । ସାଧାରଣତଃ ରାଷ୍ଟ୍ରନୀତିରେ ଧୂରୀଣ ବ୍ୟକ୍ତିମାନଙ୍କୁ ରାଷ୍ଟ୍ରଦୂତ ପଦ ଦିଆଯାଇଥାଏ । ରାଧାକୃଷ୍ଣନ୍‌ଙ୍କର ବହୁମୁଖୀ ବ୍ୟକ୍ତିତ୍ୱ, ପ୍ରତିଭା ଏପରି ଭାବରେ ଅନ୍ୟମାନଙ୍କୁ ଆକର୍ଷଣ କରିଥିଲା ଯେ ସେ ବିଶ୍ୱର ଏକ ମହାମାନ୍ୟ ମାନବ ରୂପେ ଗଣ୍ୟ ହେଉଥିଲେ । ପଣ୍ଡିତ ଜବାହାରଲାଲ ତାଙ୍କୁ ରୁଷିଆରେ ରାଷ୍ଟ୍ରଦୂତ ଭାବରେ ନିଯୁକ୍ତ କରିବାକୁ ମନସ୍ଥକଲେ । ବନ୍ଧୁମାନେ ଚାହୁଁଥିଲେ ସେ ଚୀନ୍‌ରେ ରାଷ୍ଟ୍ରଦୂତ ହୁଅନ୍ତୁ ।

୧୯୪୯ ମସିହାରେ ରାଧାକୃଷ୍ଣନ୍ ରୁଷିଆର ରାଷ୍ଟ୍ରଦୂତ ଭାର ଗ୍ରହଣ କଲେ । ଏ ଦାୟିତ୍ୱ ସହିତ ସେ ଅକ୍ସଫୋର୍ଡ୍ ବିଶ୍ୱବିଦ୍ୟାଳୟରେ ପୂର୍ବ ଭଳି ଅଧ୍ୟାପନା ଦାୟିତ୍ୱ ତୁଲାଇବାକୁ ଅନୁମତି ମଧ୍ୟ ପାଇଥିଲେ । ସେ ଶିକ୍ଷକର ପବିତ୍ର ଜୀବନରୁ ଦୂରେଇ ଯିବାକୁ ଚାହୁଁ ନଥିଲେ । ରାଜ-ନୈତିକ ଜୀବନ ପାଇଁ ତାଙ୍କର ଆନ୍ତରିକ ଆଗ୍ରହ ନଥିଲା; କିନ୍ତୁ ତାଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱ ବଳରେ ସେ ରାଜନୀତିର ଜଟିଳ ସମସ୍ୟାମାନ ଅତି ସହଜରେ ସମାଧାନ କରିପାରୁଥିଲେ ।

ସେତେବେଳେ ରୁଷିଆରେ ଷ୍ଟାଲିନ୍‌ଙ୍କର ଶାସନ ଚାଲିଥାଏ । ତାଙ୍କୁ ସେତେବେଳେ 'ଲୌହ ମାନବ' ବୋଲି କୁହାଯାଉଥିଲା । ସେ ଥିଲେ ଅତ୍ୟନ୍ତ ଦୁର୍ଦ୍ଧର୍ଷ ଓ ପ୍ରତାପଶାଳୀ । ରୁଷିଆ ସହିତ ଭାରତର ସମ୍ପର୍କ ମଧ୍ୟ ସେତେ ପ୍ରୀତିକର ନଥିଲା । ରୁଷିଆବାସୀ ଓ ରୁଷିଆର ଶାସକ ଭାରତକୁ ଭଲ ଆଖିରେ ଦେଖୁନଥିଲେ । ଭାରତ ସଦ୍ୟ ସ୍ୱାଧୀନତା ଲାଭ କରିଥାଏ । ତାର ସ୍ଥିତି ଦୃଢ଼ ହୋଇନଥାଏ । ଏପରି ଏକ ଦୁର୍ବଳ ମୁହୂର୍ତ୍ତରେ ଭାରତକୁ ରୁଷିଆ ପରି ଏକ ଶକ୍ତିଶାଳୀ ଦେଶ ଶୁଭଦୃଷ୍ଟି ପକାଇବ ବା କାହିଁକି ? କୌଣସି ରାଜନୈତିକ ବ୍ୟକ୍ତି ରୁଷିଆର ଏହି ମନୋଭାବକୁ ବଦଳାଇବା ସମ୍ଭବ ନୁହେଁ, ସେଥିପାଇଁ ବିଜ୍ଞ, ଦୂରଦୃଷ୍ଟିସମ୍ପନ୍ନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏହି ମାନବବାଦୀ ଦାର୍ଶନିକଙ୍କୁ ରୁଷିଆରେ ରାଷ୍ଟ୍ରଦୂତ ରୂପେ ନିଯୁକ୍ତି ଦେଇଥିଲେ । ରାଧାକୃଷ୍ଣନ୍ ଯେ ଭାରତୀୟ ପରମ୍ପରା ଓ ସଭ୍ୟତା ପ୍ରତି ରୁଷିଆର ଜନମତକୁ ଆକର୍ଷଣ କରିପାରିବେ ଏ ବିଶ୍ୱାସ ଜବାହାରଲାଲଙ୍କର ଥିଲା ।

ରାଧାକୃଷ୍ଣନ୍ ରୁଷରେ ରାଷ୍ଟ୍ରଦୂତ ଭାବରେ ଯୋଗଦେଲେ । ସେତେ-ବେଳକୁ ତାଙ୍କ ଅଭିଭାଷଣ ଓ ଦାର୍ଶନିକ ଲେଖା ପୃଥିବୀର ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହେଉଥାଏ । ତାହା ବିଶ୍ୱର ମହା-ମନୀଷୀମାନଙ୍କର ଶ୍ରଦ୍ଧାମିଶ୍ର ସମର୍ଥନ ଲାଭ କରୁଥିଲା । ଷ୍ଟାଲିନ୍ ଏହି ମହାନ୍ ବ୍ୟକ୍ତିଙ୍କୁ ରାଷ୍ଟ୍ରଦୂତ ରୂପେ ପାଇ ତାଙ୍କ ନିଯୁକ୍ତିକୁ ଅବିଲମ୍ବେ ସ୍ୱୀକାର

କରିଥିଲେ । ଭାରତ ପ୍ରତି ରୁଷିଆର ମତଗତ ପରିବର୍ତ୍ତନର ଏଇ ହେଲା ପ୍ରଥମ ଅଧ୍ୟାୟ ।

ଷ୍ଟାଲିନ୍ ଥିଲେ ଏକ ଅଗ୍ନିମୟ ବ୍ୟକ୍ତିତ୍ୱର ଉଜ୍ଜ୍ୱଳ ପ୍ରକାଶ । ରାଧାକୃଷ୍ଣନ୍ ଥିଲେ ମାନବୀୟ ସମ୍ବେଦନଶୀଳତାର ଏକ ଆବେଗମୟ ଶାନ୍ତ ସୁନ୍ଦର ମୂର୍ତ୍ତି । ଜଣେ ଧ୍ୱଂସର ବିଶ୍ୱସ୍ତ ସ୍ତାବକ, ଆଉ ଜଣେ ସୃଷ୍ଟି ସ୍ଥିତିର ପ୍ରଜ୍ଞାପକ । ଭାରତୀୟ ସଂସ୍କୃତି ମଣିଷକୁ ସୃଷ୍ଟିରେ ସବୁଠାରୁ ବଡ଼ ସ୍ଥାନ ଦିଏ । ଭାରତର ସନାତନ ହିନ୍ଦୁଧର୍ମ କେଉଁ ଅନାଦି ଅନନ୍ତ କାଳରୁ ସେଇ ମହାନ୍ ବାର୍ତ୍ତା ପ୍ରଚାର କରୁଛି । ସେଇ ମହାନ୍ ମନ୍ତ୍ର ଷ୍ଟାଲିନଙ୍କ ପରି ଜଣେ ଧ୍ୱଂସବାଦୀ ବ୍ୟକ୍ତିଙ୍କ ପ୍ରାଣରେ ସିଞ୍ଚନ କରିବା ପାଇଁ ସତେ ଯେପରି ରାଧାକୃଷ୍ଣନ୍ ଥିଲେ ବିଧିପ୍ରେରିତ ।

ଦିନେ ହଠାତ୍ ଷ୍ଟାଲିନଙ୍କଠାରୁ ସମ୍ବାଦ ଆସିଲା, "ଆଜି ରାତିରେ ତାଙ୍କ ସହିତ ସାକ୍ଷାତ ହେବ ।" ରାଧାକୃଷ୍ଣନ୍ ନିର୍ଦ୍ଦିଷ୍ଟ ସମୟରେ ତାଙ୍କ ପାଖରେ ପହଞ୍ଚିଲେ । ଏକ ମଧୁର ମୁହୂର୍ତ୍ତର ଏହି ମନୋରମ ସାକ୍ଷାତ ଅଳକ୍ଷ୍ୟରେ ଦୁଇଟି ଜାତିକୁ ବନ୍ଧୁତାର ବନ୍ଧନରେ ଯେ ସଂଯୋଗ କରୁଥିଲା, ତାହା ସେତେବେଳେ କେହି ବିଚାର କରିନଥିଲେ । ଯେଉଁ ଷ୍ଟାଲିନ୍ କୌଣସି ଦେଶର ରାଷ୍ଟ୍ରଦୂତଙ୍କୁ ସାକ୍ଷାତ ଦିଅନ୍ତି ନାହିଁ, ସେ ରାଧାକୃଷ୍ଣନ୍‌ଙ୍କ ପାଖରେ ପାଇ ବିହ୍ୱଳ ହୋଇଯାଇଥିଲେ । ତାଙ୍କର ବିନୟ ଭାବ, ଅଲୋଚନା-କାଳୀନ ମିଷ୍ଟ ବାକ୍‌ପଟୁତା, ଜ୍ଞାନ, ପାଣ୍ଡିତ୍ୟ ଓ ଉଦାର ଦୃଷ୍ଟିକୋଣ ଷ୍ଟାଲିନ୍‌ଙ୍କୁ ମୁଗ୍ଧ କରିଥିଲା । ରାଧାକୃଷ୍ଣନ୍‌ଙ୍କ ପ୍ରତି ତାଙ୍କର ଆକର୍ଷଣ ଭାରତ ପ୍ରତି ଆକର୍ଷଣର ପଥ ସୁଗମ କଲା । ଧନ୍ୟ ନିବାହାର, ଧନ୍ୟ ତାଙ୍କର ଦୂରଦୃଷ୍ଟି । ସେ ବନ୍ଧୁମାନଙ୍କ ଗୃପରେ ଅନ୍ୟ କୌଣସିଠାରେ ରାଧାକୃଷ୍ଣନ୍‌ଙ୍କୁ ରାଷ୍ଟ୍ରଦୂତ ରୂପେ ନିଯୁକ୍ତ କରିଥିଲେ ଭାରତ ଓ ରୁଷ ସୁସମ୍ପର୍କ ସ୍ଥାପନ ହୁଏତ ବିଳମ୍ବିତ ହୋଇଥାନ୍ତା ।

ରାଧାକୃଷ୍ଣନ୍ ପୃଥିବୀର ଅନ୍ୟାନ୍ୟ କୂଟନୀତିଜ୍ଞମାନଙ୍କ ପରି ଏତେ ଆଚରଣବାଦୀ ନଥିଲେ । ସେ କୂଟନୈତିକ ବିଧିବିଧାନ ମାନୁଥିଲେ ମଧ୍ୟ

ସେଥିରେ ନିଜକୁ ବନ୍ଦୀ କରିନଥିଲେ । ଅଧ୍ୟୟନ, ଶାସ୍ତ୍ର ଆଲୋଚନା ଓ ସଭାସମିତିରେ ଭାଷଣ ତାଙ୍କର କାର୍ଯ୍ୟସୂଚୀର ଏକ ଅଙ୍ଗ ଥିଲା । କେବଳ ଷ୍ଟାଲିନ୍ ନୁହନ୍ତି, ରୁଷର ଲେଖକ, ଦାର୍ଶନିକ ଓ ପଣ୍ଡିତମାନେ ତାଙ୍କ ପ୍ରତି ଆକର୍ଷିତ ହୋଇଥିଲେ । ଏହାଦ୍ୱାରା ଭାରତ ରୁଷର ନିକଟବର୍ତ୍ତୀ ହୋଇପାରିଲା ।

୧୯୫୨ ମସିହାରେ ରାଧାକୃଷ୍ଣନ୍ ଭାରତକୁ ଫେରିଆସିଲେ । ବିଦାୟ ପୂର୍ବରୁ ଷ୍ଟାଲିନ୍ ତାଙ୍କ ସହିତ ସାକ୍ଷାତ କରିବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ । ନିର୍ଦ୍ଦିଷ୍ଟ ସମୟରେ ଶ୍ରୀ ରାଧାକୃଷ୍ଣନ୍ ଓ ଷ୍ଟାଲିନ୍‌ଙ୍କ ମଧ୍ୟରେ ଶେଷଥର ପାଇଁ ସାକ୍ଷାତ ହେଲା । ସେତେବେଳକୁ ଷ୍ଟାଲିନ୍ ରୋଗଶଯ୍ୟାରେ ଥିଲେ । ରାଧାକୃଷ୍ଣନ୍ ତାଙ୍କୁ ଶଯ୍ୟାଶାୟୀ ଅବସ୍ଥାରେ ବିଦାୟକାଳୀନ ସାକ୍ଷାତ ଦେଇ ଆବେଗରେ ଅଶ୍ରୁସିକ୍ତ ହୋଇ ଉଠିଥିଲେ । ସେ ଷ୍ଟାଲିନ୍‌ଙ୍କୁ ଶରୀର ପ୍ରୀତି ଓ ହୃଦୟଭରା ସମ୍ବେଦନା ମଧ୍ୟରେ ସ୍ପର୍ଶ କରିବା ବେଳେ ଷ୍ଟାଲିନ୍‌ଙ୍କ ପରି ଲୌହମାନବଙ୍କ ଆଖିରୁ ମଧ୍ୟ ଲୋତକ ନିର୍ଗତ ହୋଇଥିଲା । ସେ ଆବେଗମୟ ଭାଷାରେ କହିଥିଲେ, "ଆପଣଙ୍କର ଏ ପ୍ରୀତି ସ୍ପର୍ଶ ମୋପାଇଁ ଦୁର୍ଲଭ । ଆପଣଙ୍କ ଦୀର୍ଘ ଜୀବନ ମୁଁ କାମନା କରେ । ମୁଁ ତ ଯିବା ଅପେକ୍ଷାରେ ଅଛି ।" ଏହି ବିଦାୟକାଳୀନ ଶୋକଗ୍ରସ୍ତ ଉଭୟ ପ୍ରାଣକୁ ବିଗଳିତ କରିଥିଲା । ଶେଷରେ ମାନବତାର ହିଁ ଜୟ ହେଲା ।

## ସର୍ବୋଚ୍ଚ ରାଷ୍ଟ୍ରୀୟ ମର୍ଯ୍ୟାଦା

'ପ୍ରଫେସର୍ ଆଲଫ୍ରେଡ଼ ଜନ'ଙ୍କ ବକ୍ତବ୍ୟର କେତେକ ଅଂଶ ଉଦ୍ଧାର କରାଯାଇପାରେ । ଥରେ ସେ କଥାପ୍ରସଙ୍ଗରେ କହିଥିଲେ, "ମଣିଷ ତା' ନିଜ ଭାଗ୍ୟର ସ୍ରଷ୍ଟା । ସେ ତାର ଭବିଷ୍ୟତ ଜୀବନକୁ ନିରବଚ୍ଛିନ୍ନ ଉଦ୍ୟମ ବଳରେ ନୂତନ ଭାବରେ ଗଢ଼ିପାରେ । ମଣିଷ ପକ୍ଷରେ ଏପରି କୌଣସି କାର୍ଯ୍ୟ ନାହିଁ ଯାହାକୁ ସେ ଚାହିଁଲେ କରି ପାରିବ ନାହିଁ । ସେ

ବସ୍ତୁସ୍ମୃଷ୍ଟି କରିପାରେ । ମଣିଷର ମନ କଠିନ ପର୍ବତକୁ ମଧ୍ୟ ଦୋହଲାଇଦେଇପାରେ ।" ରାଧାକୃଷ୍ଣନ୍ ଥିଲେ ସେଇପରି ଜଣେ ସାଧକ । ଅସମ୍ଭବ କାର୍ଯ୍ୟ ବୋଲି ତାଙ୍କ ପାଖରେ କିଛି ନଥିଲା । ତାଙ୍କୁ ଯେତେବେଳେ ଯେଉଁ ଦାୟିତ୍ୱରେ ରଖାଯାଉଥିଲା, ସେ ସେତେବେଳେ ସେଠାରେ ଏକ ଯାଦୁକର ପରି ଅଦ୍ଭୁତ କାର୍ଯ୍ୟ ସମ୍ପାଦନ କରିପାରୁଥିଲେ ।

ରୁଷିଆରୁ ଫେରିବା ପରେ ୧୯୫୨ ମସିହାରେ ସେ ଭାରତର ଉପରାଷ୍ଟ୍ରପତି ଭାବେ ନିଯୁକ୍ତ ହେଲେ । ଦେଶ ବିଦେଶରେ ସେ ଯେଉଁ ସୁନାମ ଅର୍ଜନ କରିଥିଲେ ଓ ସରକାରୀ ଦାୟିତ୍ୱ ତୁଲାଇବାରେ ତାଙ୍କର ଯେଉଁ ଦୂରଦୃଷ୍ଟି, ନିଷ୍ଠା, ସାଧୁତା ଓ ପାରଗପଣିଆ ଥିଲା ତାହା ତାଙ୍କୁ ଏହି ରାଷ୍ଟ୍ରୀୟ ଦାୟିତ୍ୱ ତୁଲାଇବା ପାଇଁ ସୁଯୋଗ ଦେଇଥିଲା । ଭଲ ସର୍ବଦା ଆଗରୁ ଆଗକୁ ଯାଏ ଓ ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ ଉଠେ । ରାଧାକୃଷ୍ଣନ୍‌ଙ୍କର ଜୀବନଦର୍ଶନ ହିଁ ତାଙ୍କ ନିଜ ଜୀବନରେ ପ୍ରତିଫଳିତ ହୋଇଥିଲା । ସେ କହୁଥିଲେ, "ମନୁଷ୍ୟର ଆଭ୍ୟନ୍ତରୀଣ ବାସ୍ତବତାର ସଫଳ ରୂପାୟନ ହେଉଛି ଜୀବନର ଅଭିପ୍ରାୟ । ମନୁଷ୍ୟ ଯଦି ତାର ଅନ୍ତରସ୍ଥ ସତ୍ୟକୁ ଉପଲବ୍ଧି କରିବାରେ ଜାଣିଶୁଣି ଅବହେଳା କରେ ତେବେ ସେ ଗୋଟିଏ ସୁଯୋଗ ହରାଇବସେ ।"

ସେ ଜୀବନରେ ଅନ୍ତରସ୍ଥ ସତ୍ୟକୁ ସର୍ବଦା ଉପଲବ୍ଧି କରିଛନ୍ତି, ଫଳରେ ବହୁ ସୁଯୋଗ ତାଙ୍କୁ ନିମନ୍ତ୍ରଣ କରିଛନ୍ତି ଓ ସେ ସବୁର ସଦୁପଯୋଗ କରିଛନ୍ତି । ଉପରାଷ୍ଟ୍ରପତି ହିସାବରେ ସେ ନିର୍ମଳ ଭାବରେ ସାମ୍ବିଧାନିକ ଦାୟିତ୍ୱ ତୁଲାଇବା ସହିତ ଦିଲ୍ଲୀ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ମଧ୍ୟ ଦାୟିତ୍ୱ ଗ୍ରହଣ କରିଥିଲେ । ବହୁ ଦାୟିତ୍ୱ ଭିତରେ ସେ ବୁଡ଼ିରହିଥିଲେ ମଧ୍ୟ ସେ ସର୍ବଦା ପ୍ରଫୁଲ୍ଲ ଥିଲେ । ତାଙ୍କ ଭିତରେ କୌଣସି ପ୍ରକାର ମାନସିକ ଉତ୍ତେଜନା ପ୍ରକାଶ ପାଉନଥିଲା ।

ସେ ଉପରାଷ୍ଟ୍ରପତି ଥିବାବେଳେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଭାରତର ରାଷ୍ଟ୍ରପତି ଥିଲେ । ନମ୍ରତା, ମିଷ୍ଟାଳାପ, ସଦାଗ୍ରହ ଓ କର୍ତ୍ତବ୍ୟନିଷ୍ଠା ତାଙ୍କର ବିଶେଷ ଗୁଣ ଥିଲା । ତାଙ୍କର ସୁଗୁଣ ପାଇଁ ରାଧାକୃଷ୍ଣନ୍ ଅନ୍ତରରେ ସହିତ

ତାଙ୍କୁ ସମ୍ମାନ ଦେଉଥିଲେ । ଅପର ପକ୍ଷରେ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ରାଧାକୃଷ୍ଣନ୍‌ଙ୍କ ବହୁମୁଖୀ ବ୍ୟକ୍ତିତ୍ୱ ପ୍ରତି ଆକର୍ଷିତ ହୋଇଥିଲେ । ଭାରତର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଏହି ତତ୍ତ୍ୱଦର୍ଶୀ, ଦାର୍ଶନିକ, ରାଷ୍ଟ୍ରନୀତିଜ୍ଞ ଓ ମହାନ୍ ପୁରୁଷଙ୍କର ଗୁଣାବଳୀରେ ଅତ୍ୟନ୍ତ ମୁଗ୍‌ଧ ହୋଇଥିଲେ । ରାଧାକୃଷ୍ଣନ୍ ପଣ୍ଡିତ ଜବାହାରଲାଲଙ୍କ ପ୍ରଚଣ୍ଡ ବ୍ୟକ୍ତିତ୍ୱ ପ୍ରତି ଯଥେଷ୍ଟ ସମ୍ମାନ ଦେଉଥିଲେ ଓ ତାଙ୍କ ଉପରେ ମଧ୍ୟ ଏକ ପୁସ୍ତକ ରଚନା କରିଥିଲେ ।

ଭାରତର ଉପରାଷ୍ଟ୍ରପତି ରାଜ୍ୟସଭାର ଅଧ୍ୟକ୍ଷ । ସେ ଏହାର ଅଧ୍ୟକ୍ଷ ଭାବରେ ସୀର୍ଘଦିନ କାର୍ଯ୍ୟ କରିଥିଲେ । ତାଙ୍କର ସଂଗଠନ ଶକ୍ତି ଓ ପରିଚାଳନାଗତ ସାମର୍ଥ୍ୟ ଏତେ ଅଧିକ ଥିଲା ଯେ, କୌଣସି ଜଟିଳ ସମସ୍ୟା ତାଙ୍କପାଇଁ ଜଟିଳ ନଥିଲା । ରାଜ୍ୟସଭାର ପ୍ରତ୍ୟେକ ସଭ୍ୟ ତାଙ୍କ ମତାମତ, ଆଲୋଚନା, ଅଭିଭାଷଣ ଶୁଣିବା ପାଇଁ ବ୍ୟଗ୍ରତା ପ୍ରକାଶ କରୁଥିଲେ । ତାଙ୍କର ବ୍ୟକ୍ତିତ୍ୱ ନିଜ ଦଳ ତଥା ବିରୋଧୀ ଦଳ ଉପରେ ସମାନ ଭାବରେ ପଡ଼ୁଥିଲା । ଦଳୀୟ ରାଜନୀତିଠାରୁ ସେ ବହୁ ଉର୍ଦ୍ଧ୍ୱରେ ଥିବାରୁ ତାଙ୍କ ସିଦ୍ଧାନ୍ତ ସମସ୍ତଙ୍କ ପାଇଁ ଗ୍ରହଣୀୟ ଥିଲା । ୧୯୫୨ରୁ ୧୯୬୨ ପର୍ଯ୍ୟନ୍ତ ୧୦ ବର୍ଷକାଳ ସେ ଏହି ଗୁରୁଦାୟିତ୍ୱ ସୁରୁଖୁରୁରେ ତୁଲାଇଥିଲେ ।

ଡକ୍ଟର ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ପଦରୁ ଅବ୍ୟାହତି ନେବା ପରେ ୧୯୬୨ ମସିହାରେ ଡକ୍ଟର ରାଧାକୃଷ୍ଣନ୍ ରାଷ୍ଟ୍ରପତି ପଦରେ ଅଭିଷିକ୍ତ ହେଲେ । ଏହା ଭାରତ ପରି ଏକ ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ରର ସର୍ବୋଚ୍ଚ ପଦ । ଭାରତରେ ରାଷ୍ଟ୍ରପତିଙ୍କ ନାମରେ ଶାସନ ଚାଲେ । ସାରା ଭାରତକୁ ଯଦି ଗୋଟିଏ ପରିବାର ବୋଲି ଗ୍ରହଣ କରାଯାଏ, ତା'ହେଲେ ରାଷ୍ଟ୍ରପତି ହେଉଛନ୍ତି ସେହି ପରିବାରର ମୁଖ୍ୟ । ତାଙ୍କର ଆଦର୍ଶ, ନିଷ୍ଠା, କର୍ତ୍ତବ୍ୟପରାୟଣତା ଉପରେ ଦେଶର ଭାଗ୍ୟ ନିର୍ଭର କରେ । ରାଷ୍ଟ୍ରପତି ଭାରତରେ ପ୍ରତ୍ୟକ୍ଷ ଭାବରେ ଶାସନ କରନ୍ତି ନାହିଁ । ଭାରତର ମନ୍ତ୍ରୀ-ପରିଷଦ ପ୍ରତ୍ୟକ୍ଷ ଶାସନ ପାଇଁ ଦାୟୀ; କିନ୍ତୁ ରାଷ୍ଟ୍ରପତି ମନ୍ତ୍ରୀପରିଷଦକୁ ସ୍ୱାଧୀନ ଭାବରେ ପରାମର୍ଶ ଦେଇପାରନ୍ତି ।

ରାଧାକୃଷ୍ଣନ୍ ଉପରାଷ୍ଟ୍ରପତି ଭାବରେ ଯେଉଁ ଦାୟିତ୍ୱ ତୁଲାଇଥିଲେ ତାହା ତାଙ୍କର ଶ୍ରଦ୍ଧା ଓ ସମ୍ମାନକୁ ବହୁଗୁଣିତ କରିଥିଲା ଓ ରାଷ୍ଟ୍ରପତି ପଦ ଲାଭ କରିବା ଦ୍ୱାରା ସେହି ପଦର ମର୍ଯ୍ୟାଦା ବହୁଗୁଣିତ ହେଲା ।

ରାଧାକୃଷ୍ଣନ୍ ରାଷ୍ଟ୍ରପତି ପଦ ଗ୍ରହଣ କରିବା ସମୟରେ ଭାରତର ରାଜନୈତିକ ପରିସ୍ଥିତି ଆଦୌ ଭଲ ନଥିଲା । ସେତେବେଳେ ଭାରତ ଚୀନଦ୍ୱାରା ଆକ୍ରମିତ ହୋଇଥିଲା । ଏହା ବ୍ୟତୀତ ପାକିସ୍ଥାନର ଆକ୍ରମଣ ଓ ଦେଶ ଭିତରେ ଯୁଦ୍ଧକାଳୀନ ଉତ୍ତପ୍ତ ପରିସ୍ଥିତି ଭିତରେ ତାଙ୍କୁ ଦାୟିତ୍ୱ ତୁଲାଇବାକୁ ପଡ଼ିଥିଲା । ଯୁଦ୍ଧ ଯେପରି ଭାବରେ ଜାତିର ଶାନ୍ତି ନଷ୍ଟ କରେ, ସେପରି ଭାବରେ ଅଭାବ ଅନଟନ ଓ ଅସ୍ୱାଭାବିକ ପରିବେଶ ଜାତୀୟ ଜୀବନକୁ ଦୋହଲାଇଦିଏ । ଏହା ହେଉଛି ଯୁଦ୍ଧକାଳୀନ ପରିସ୍ଥିତିର ପରିଣତି । ରାଧାକୃଷ୍ଣନ୍ ଜବାହାରଲାଲ ନେହେରୁଙ୍କ ବିଜ୍ଞ ପରାମର୍ଶ ଅନୁସାରେ ସମୟୋଚିତ ପଦକ୍ଷେପ ନେଇ ଅବସ୍ଥାକୁ ଆୟତ୍ତ କରିଥିଲେ ।

ରାଧାକୃଷ୍ଣନ୍ଙ୍କର ମହାନ୍ ବ୍ୟକ୍ତିତ୍ୱ ଜବାହାରଲାଲଙ୍କୁ ମନ୍ତ୍ରୀଭୂତ କରିଥିଲା । ସେ ତାଙ୍କୁ ଜାତୀୟ ଗୁରୁ ରୂପେ ଗ୍ରହଣ କରିଥିଲେ । ସେ ଦଳର୍ଦ୍ଧ୍ୱକୁ ଉଠେ ସମସ୍ତଙ୍କର ହୋଇଗଲା ପରି ରାଧାକୃଷ୍ଣନ୍ ପ୍ରତ୍ୟେକଙ୍କର ପ୍ରୀତିଭାଜନ ଓ ଭକ୍ତିଭାଜନ ଥିଲେ । ଦଳୀୟ ରାଜନୀତିଠାରୁ ସେ ଊର୍ଦ୍ଧ୍ୱରେ ଥିଲେ, ତେଣୁ ବିରୋଧୀଦଳ ମଧ୍ୟ ତାଙ୍କୁ ଭକ୍ତି ପ୍ରଦର୍ଶନ କରୁଥିଲା । ତାଙ୍କୁ ରାଷ୍ଟ୍ରପତି ଭାବରେ ପାଇ ଭାରତର ଗର୍ବ ଗୌରବ ବହୁଗୁଣିତ ହୋଇଥିଲା । ଭାରତୀୟ ପରମ୍ପରା, ଭାରତୀୟ ଆଦର୍ଶ ଓ ସଂସ୍କୃତିର ବିକାଶ ପାଇଁ ସେ ପ୍ରାଣ ବିସର୍ଜନ କରିଥିଲେ । ମାନବିକତା ପ୍ରତି ତାଙ୍କର ଗଭୀର ସମ୍ମାନ ଥିଲା; ତେଣୁ ସେ ସବୁବେଳେ ମାନବିକ ମୂଲ୍ୟ, ମାନବିକ ଅଧିକାର, ମାନବିକତାର ଉନ୍ନତି ପାଇଁ ଚେଷ୍ଟିତ ଥିଲେ । ବିଶ୍ୱରେ ଶାନ୍ତି ସ୍ଥାପନ କରିବା ପାଇଁ ତାଙ୍କ ମନ ସର୍ବଦା ବ୍ୟାକୁଳିତ ହେଉଥିଲା ।

ରାଷ୍ଟ୍ରପତି ଭାବରେ ସେ ବହୁ ପାଶ୍ଚାତ୍ୟ ରାଷ୍ଟ୍ର ପରିଭ୍ରମଣ କରିଥିଲେ । ଇଂଲଣ୍ଡ, ଆମେରିକା, ରୁଷ ପ୍ରଭୃତି ଦେଶକୁ ଯାଇ ଭାରତ ବିଷୟରେ

ସେଠିକାର ସରକାର ଓ ଅଧିବାସୀମାନଙ୍କୁ ସ୍ପଷ୍ଟ ଧାରଣା ଦେଇଥିଲେ । ଭାରତୀୟ ଜୀବନଧାରା, ଲୋକଚରିତ୍ର, ସାମାଜିକତା, ଶାସନବିଧାନ ଓ ଆଧ୍ୟାତ୍ମିକତା ବିଷୟରେ ସେ ଅନର୍ଗଳ ଭାବରେ ତତ୍ତ୍ୱପୂର୍ଣ୍ଣ ଭାଷଣ ଦେଇ ଭାରତର ମହତ୍ତ୍ୱ ବଢ଼ାଇଥିଲେ । ପୃଥିବୀ ବୁଝିଥିଲା—ରାଜନୈତିକ ସ୍ୱାଧୀନତା ପ୍ରାପ୍ତ ଦୁଇଶହ ବର୍ଷ ପାଇଁ ଭାରତ ହରାଇଥିଲେ ମଧ୍ୟ ନୈତିକ ଶକ୍ତିରେ ସେ ସାରା ପୃଥିବୀକୁ ଶାସନ କରୁଥିଲା ।" ଭାରତ ହେଉଛି ପୃଥିବୀ ଭିତରେ ଏକମାତ୍ର ଦେଶ, ଯେ କି କେଉଁ ଅନାଦି କାଳରୁ ସାରା ପୃଥିବୀକୁ ସେଇ ନୈତିକ ଅନୁଶାସନ ଦେଇ ଆସିଛି । ତା'ର ବଳରେ ମଧ୍ୟ ସେ ତାର ଅପହୃତ ସ୍ୱାଧୀନତାକୁ ପୁଣି ଫେରପାଇଲା । ଏଥିପାଇଁ ରକ୍ତାକ୍ତ ସଂଘର୍ଷର ଆବଶ୍ୟକତା ପଡ଼ିଲା ନାହିଁ । ଯେଉଁ ଦେଶ ଶତ୍ରୁର ହୃଦୟ ପରିବର୍ତ୍ତନ କରିଦେବା ପାଇଁ ନୈତିକ ବଳରେ ବଳୀୟାନ୍, ସେ ଦେଶ ଯୁଦ୍ଧ ବିଭୀଷିକା ସୃଷ୍ଟି କରିବାର କି ଆବଶ୍ୟକତା ଅଛି ? ରାଧାକୃଷ୍ଣନ୍ ରାଷ୍ଟ୍ରମୁଖ୍ୟ ହିସାବରେ ଭାରତର ମର୍ମବାଣୀ ପ୍ରଚାର ଓ ପ୍ରସାର କରି ସାରା ପୃଥିବୀରେ ଏହାର ସମ୍ମାନ ପ୍ରତିଷ୍ଠିତ କରିଥିଲେ ।

ପୃଥିବୀର ବହୁ ବିଶ୍ୱବିଦ୍ୟାଳୟ ତାଙ୍କୁ 'ଡକ୍ଟର' ଉପାଧି ପ୍ରଦାନ କରିଥିଲେ । ଏହାଦ୍ୱାରା ରାଧାକୃଷ୍ଣନ୍‌ଙ୍କର ମହତ୍ତ୍ୱ ବଢ଼ିଥିଲା କି ନାହିଁ କୁହାଯାଇ ପାରିବ ନାହିଁ; କିନ୍ତୁ ସେହି ବିଶ୍ୱବିଦ୍ୟାଳୟମାନଙ୍କର ଗୌରବ ନିଶ୍ଚିତ ଭାବରେ ବଢ଼ିଥିଲା ।

## ଶିକ୍ଷା ଓ ଭବିଷ୍ୟତ୍

ରାଧାକୃଷ୍ଣନ୍ ଭାରତର ରାଷ୍ଟ୍ରପତି ପଦ ଲାଭ କରିବା ପରେ ପୃଥିବୀର ବହୁ ଦେଶରେ ଓ ଭାରତର ନାନା ସ୍ଥାନରେ ଅନେକ ସାରଗର୍ଭକ ଭାଷଣ ବିଭିନ୍ନ ବିଷୟରେ ଦେଇଛନ୍ତି । ସେହି ଅଭିଭାଷଣଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ୍ ଓ ଦେଶର ସାଇତା ଧନ । ସେସବୁ ପୁସ୍ତକ ଆକାରରେ ଭାରତ ସରକାରଙ୍କଦ୍ୱାରା ପ୍ରକାଶିତ ହୋଇଛି ।

୧୯୬୨ ମସିହା ନଭେମ୍ବର ୧୩ ତାରିଖରେ ଶିଶୁଦିବସ ଉପଲକ୍ଷେ 'ଶିଶୁ ଓ ଭବିଷ୍ୟତ' ଉପରେ ସେ ଏଇ ପ୍ରକାରର ମତାମତ ଦେଇଥିଲେ—

"ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ଜନ୍ମତିଥି ନଭେମ୍ବର ୧୪ ତାରିଖକୁ ଭାରତରେ 'ଶିଶୁ ଦିବସ' ରୂପେ ପାଳନ କରାଯାଉଛି । ଶିଶୁମାନେ ଯେଉଁ ଆଦର୍ଶ ପୋଷଣ କରିଥାନ୍ତି ତାହାଦ୍ୱାରା ସେମାନଙ୍କର ମନ ଓ ହୃଦୟର ପରିବର୍ତ୍ତନ ଘଟେ । ବଡ଼ପଣିଆର ଦୃଷ୍ଟିଭଙ୍ଗୀ ସେମାନଙ୍କ ମଧ୍ୟରେ ସୃଷ୍ଟି କରିବା ସବୁଠୁ ବଳି ବଡ଼ କର୍ତ୍ତବ୍ୟ । ଆମେ ଯାହା ଆଖିଆଗରେ ଦେଖୁ, ତାହାହିଁ ହେଉ । ବଡ଼ପଣିଆ, ଜ୍ଞାନ ଶକ୍ତି କିମ୍ବା ଉଚ୍ଚ ଶିକ୍ଷାର ଫଳାଫଳ ନୁହେଁ । ଦୁର୍ବଳ ଆତ୍ମଶକ୍ତିଦ୍ୱାରା ଏହା ଲାଭ କରାଯାଇ ପାରିବ ନାହିଁ । ଆତ୍ମଶୃଙ୍ଖଳା ଭିତରୁ ବଡ଼ପଣିଆର ଜନ୍ମ ।"

ଆମେ ତ୍ୟାଗ ଓ ଆତ୍ମନିବୃତ୍ତି ମଧ୍ୟରୁ ଏହି ଲକ୍ଷ୍ୟ ହାସଲ କରିପାରିବା । ନେହେରୁଙ୍କର ସାରା ଜୀବନ ଶାନ୍ତିପାଇଁ ଅନୁରକ୍ତ, ସ୍ୱାଧୀନତା ପାଇଁ ବ୍ୟାକୁଳତା, ଶିଶୁ କଲ୍ୟାଣ ଓ ଶିଶୁ ପ୍ରୀତି ପାଇଁ ଆନ୍ତରିକତା ପ୍ରକାଶ କରିଥିଲି । ଆମ ପିଲମାନେ ତାଙ୍କ ଚରିତ୍ରରୁ କେତେକ ବିଶେଷ ଗୁଣ ଆହରଣ କରିବା ଉଚିତ । ତାଙ୍କ ଭିତରେ କୌଣସି ଭ୍ରମପୂର୍ଣ୍ଣ ଧାରଣା ନଥିଲି ଓ ସାର୍ବଜନୀନତାକୁ ସେ ଅଧିକ ପସନ୍ଦ କରୁଥିଲେ । ଶିଶୁମାନେ ଏହି ଦୁଇଟି ଗୁଣର ଅଧିକାରୀ ହୋଇପାରିଲେ ସେମାନଙ୍କ ଜାତୀୟ ଜୀବନ ମହନୀୟ ହୋଇଉଠନ୍ତା । ଜୀବନ ପାଇଁ ସମ୍ମାନ ପୋଷଣ କରିବା ଆମର ପ୍ରକୃତି, ଶିଶୁମାନଙ୍କୁ ପ୍ରକୃତ ତାଲିମ ଦେଇ ଏହି ଗୁଣକୁ ଶକ୍ତିଶାଳୀ କରିବା ଉଚିତ । ସେମାନେ ମାନବିକ ମର୍ଯ୍ୟାଦା, ରୁଚି ଓ ସ୍ୱାଧୀନତା ପାଇଁ ସମ୍ମାନ ପୋଷଣ କରି ଶିଖିବା ଆବଶ୍ୟକ । ଆମେ ଏ ଦିଗରେ ଯେତେ ଯାହା ଅସୁବିଧାର ସମ୍ମୁଖୀନ ହେଉନା କାହିଁକି, ଏହି ଆଦର୍ଶ ରକ୍ଷା କରିବା ଦରକାର ।

ଅନେକଦିନରୁ ଆମ ଶିଶୁମାନଙ୍କ ପାଇଁ ଏକ ମହତ୍ତର ସମ୍ଭାବନାମୟ ଭବିଷ୍ୟତ ଲାଭ କରିବାକୁ ଆମେ ଲାଗିପଡ଼ିଛୁ । ଯେଉଁମାନେ ଅସହାୟ ସେମାନଙ୍କୁ ସାହାଯ୍ୟ କରିବାପାଇଁ ଆମେ ଦୃଢ଼ପଣକର । ଦେଶର ସବୁଦାରୁ

ଅତିଦୁର୍ବଳ ଲୋକଙ୍କୁ ସୁବିଧା ସୁଯୋଗ ଦେଇ ତାର ଆତ୍ମୋନ୍ନତି କରିବା ହେଉଛି ଗଣତନ୍ତ୍ରର ପ୍ରକୃତ ଆଭିମୁଖ୍ୟ । ସମାଜରେ ଥିବା ମୂକ, ବଧିର, ଅନ୍ଧ ଓ ଅନ୍ୟାନ୍ୟ ଅସମର୍ଥ ଶିଶୁମାନଙ୍କ ଉପରେ କି ପ୍ରକାର ବୋଝ ଲଦା-ହୋଇଛି ତାହା ପ୍ରତି ଆଖିବୁଜିଦେବା ଉଚିତ ନୁହେଁ । ପ୍ରକୃତରେ ପିଲ-ମାନେ ଦୁଷ୍ଟ ନୁହନ୍ତି, ବରଂ ସେମାନେ ଅଧିକ ଭାବରେ ହତଭାଗ୍ୟ ଓ ସୁଖହରା । ସେମାନଙ୍କର ଶାରୀରିକ ତଥା ମାନସିକ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଆମେ ଚେଷ୍ଟା କରିବା ଉଚିତ । ଆମେ ବର୍ତ୍ତମାନ ଏପରି ଏକ ସମାଜରେ ବାସ କରୁଛେ, ଯାହା ଗଣତାନ୍ତ୍ରିକ ଏବଂ ପ୍ରତିଯୋଗିତାପରିପୂର୍ଣ୍ଣ । ଏଠାରେ ବ୍ୟକ୍ତିର ସ୍ଥିତି ସଂଘର୍ଷମୟ । ପଦମର୍ଯ୍ୟାଦା, କାର୍ଯ୍ୟ କିମ୍ବା କଏ କେତେ ସୌଭାଗ୍ୟର ଅଧିକାରୀ ସେଥିରୁ ବ୍ୟକ୍ତିର ସ୍ଥିତି ନିର୍ଦ୍ଧାରଣ କରାଯାଇ ପାରିବ ନାହିଁ । ପ୍ରତିଯୋଗିତାପୂର୍ଣ୍ଣ ସଂଘର୍ଷ ମଧ୍ୟରୁ ନିଜର ସ୍ଥିତିକୁ ଦୃଢ଼ ରଖିବାକୁ ହେବ । ଆମର ଦେଶକୁ ଏକ ସୌଭାଗ୍ୟର ଦେଶ ରୂପେ ଗଢ଼ିବା ପାଇଁ ଲକ୍ଷ୍ୟ ରହିବା ଦରକାର । ସେଠାରେ ଯେ ଯୋଗ୍ୟ, ବିଜ୍ଞ, ଚରିତ୍ର-ବାନ୍ ଓ ସମର୍ଥ ତା'ପାଇଁ ସବୁ ସୁଯୋଗ ଓ ସୁବିଧା ରହିବ । କୌଣସି ପ୍ରକାରର ଅନ୍ୟ ବିଚାର ରହିବ ନାହିଁ ।

## ଶିଶୁ ଓ କଳା

ଦିଲ୍ଲୀରେ ୧୯୬୨ ମସିହା ମାର୍ଚ୍ଚମାସ ୧୫ ତାରିଖରେ ଏକ ଆନ୍ତ-ର୍ଜାତିକ ଶିଶୁମେଳା ଅନୁଷ୍ଠିତ ହୋଇଥିଲା । ଏହି ମେଳାର ପ୍ରାରମ୍ଭିକ ଅଭିଭାଷଣରେ ସେ କହିଥିଲେ, "ଶିଶୁ କଳା ପ୍ରଦର୍ଶନୀ ଏକ ବାର୍ଷିକ ସଂଘଟନରେ ପରିଣତ ହେଲଣି । ଆମ ଶିଶୁମାନଙ୍କ ଭିତରେ ଥିବା ବିରାଟ କଳାନିପୁଣତାର ସମ୍ଭାବନା ବିଷୟରେ ଏସବୁ ଅନୁଷ୍ଠାନ ଆମ୍ଭମାନଙ୍କୁ ଧାରଣା ଦେଉଛି । ପ୍ରାୟ ପ୍ରତ୍ୟେକ ଶିଶୁ, ଯେଉଁମାନଙ୍କର କଳ୍ପନା ଅପ୍ରତିହତ, ସେମାନେ ସମସ୍ତେ ଏଥିପ୍ରତି ଆକୃଷ୍ଟ । ସାଧାରଣତଃ ଶ୍ରେଣୀରେ ଅବସାଦଗ୍ରସ୍ତ, ଅନ୍ୟମନସ୍କ ଶିକ୍ଷକମାନଙ୍କଦ୍ୱାରା ଶିକ୍ଷାଲାଭ କରୁଥିବା ଛାତ୍ର-

ମାନେ ଏହା ମାଧ୍ୟମରେ କ୍ଲାନ୍ତିକର ଶ୍ରେଣୀ କାର୍ଯ୍ୟରୁ ଯଥେଷ୍ଟ ଆଶ୍ୱସ୍ତି ଲାଭ କରନ୍ତି । ଯେତେବେଳେ ସେମାନେ ଚିତ୍ରଣ କରନ୍ତି, ସେତେବେଳେ ନିଜକୁ ମୁକ୍ତ ମନେକରନ୍ତି ଓ ସ୍ୱାଧୀନ ଭାବରେ ନିଜର କଳାତ୍ମକ ଆତ୍ମପ୍ରକାଶ କରିଥାନ୍ତି । ଶିଶୁମାନଙ୍କର ଦୃଷ୍ଟିଭଙ୍ଗୀ ବଡ଼ ନିର୍ମଳ । ରଙ୍ଗ ସମାବେଶ, ଗତିଶୀଳତା, ତାଳ, ଲୟ ଓ ସଙ୍ଗୀତ ପ୍ରତି ସେମାନଙ୍କର ଗଭୀର ଆକର୍ଷଣ ଥାଏ ।

ଚିତ୍ରଣ କରିବା ସମୟରେ ପିଲାମାନେ ପରୀକ୍ଷା କରନ୍ତି । ସେମାନେ ପ୍ରକୃତି ପର୍ଯ୍ୟବେକ୍ଷଣ କରନ୍ତି ଓ ସେମାନଙ୍କର କଳ୍ପନା ପ୍ରସାରିତ ହୁଏ । ଶିଶୁମାନଙ୍କର ଏହି ଉତ୍ସାହକୁ ଦେଖିଲେ ମନରେ ଧାରଣା ଆସେ ଯେ ମଣିଷ ପାଇଁ ଏ ସଂସାର ଆନନ୍ଦମୟ । ଶିଶୁମାନେ ଏହାଦ୍ୱାରା ମଣିଷ ଜାତି ପ୍ରତି ସମ୍ମାନ ପୋଷଣ କରନ୍ତି । ସେମାନଙ୍କର ଜୀବନ ପ୍ରତି ସମ୍ମାନବୋଧ, ଭଲପଣିଆ ପ୍ରତି ଶ୍ରଦ୍ଧା ଏବଂ ନିଷ୍ଠୁରତା ପ୍ରତି ଘୃଣା ସୃଷ୍ଟି ହୁଏ । ସେମାନେ ଏକ ବନ୍ଧୁତ୍ୱପୂର୍ଣ୍ଣ ସଂସାରର ସ୍ରଷ୍ଟା ହୁଅନ୍ତି । ଶିଶୁମାନଙ୍କ ମଧ୍ୟରେ ଯେଉଁ ପ୍ରବୃତ୍ତି ଅଛି ସେ ସବୁର ଅଭିବ୍ୟକ୍ତି ନିତାନ୍ତ ଦରକାର । ଆମେ ତାଙ୍କର ଉତ୍ସାହ ଓ ଜିଜ୍ଞାସାକୁ ନଷ୍ଟ କରିଦେବା କିମ୍ବା ଭାବପ୍ରବଣତାକୁ ବାଧା ଦେବା ଉଚିତ ନୁହେଁ ।

ଏହି ଯେଉଁ ଚିତ୍ରକଳା ପ୍ରଦର୍ଶନୀ ହୋଇଛି, ସେଠାକୁ ଦେଶ ଓ ବିଦେଶର ବହୁ ଜାଗାରୁ ଶିଶୁ ଚିତ୍ର ସବୁ ଆସିଛି, ଏହା ଶିଶୁମନର ଆନ୍ତର୍ଜାତିକ ଏକତାର ସ୍ପଷ୍ଟ ସୂଚନା ଦିଏ ।

ଜାତୀୟ ସଂହତି ବିଷୟରେ ଆମେ ଆଜି ବହୁ କଥା କହୁ । ସାରା ଜାତି ପ୍ରତି ଆମର ଯେଉଁ ଆନୁଗତ୍ୟ ତାହା ସଙ୍କୀର୍ଣ୍ଣ ଜାତିଆଣ ଭାବ ଓ ସାମ୍ପ୍ର-ଦାୟିକତାଦ୍ୱାରା କ୍ଷୁଣ୍ଣ ହେଉଛି । ଏହି ପ୍ରକାର ପ୍ରଦର୍ଶନୀରେ ଶିଶୁମାନେ ବିଭିନ୍ନ ପ୍ରାନ୍ତରୁ ଆସି ମିଶିବାଦ୍ୱାରା ଆମେ ସଙ୍କୀର୍ଣ୍ଣତା ପ୍ରତି ଆକୃଷ୍ଟ ନହୋଇ ବୃହତ୍ତର ସ୍ୱାର୍ଥପାଇଁ ଦୃଷ୍ଟି ଦେଇଥାଉ ।

ଆମେ ବର୍ତ୍ତମାନ ଜେନେଭାର ନିରସ୍ତ୍ରୀକରଣ ସମ୍ମିଳନୀ ପାଇଁ ବ୍ୟସ୍ତ । ପ୍ରତିରକ୍ଷାର ଅର୍ଥ, ଆମେ ଏକ ବିପଦସଙ୍କୁଳ ସଂସାରରେ ରହୁଛେ ଏବଂ

ସେଇଥିପାଇଁ ସୈନ୍ୟବାହିନୀର ଶକ୍ତି ଉପରେ ଆମକୁ ନିର୍ଭର କରିବାକୁ ପଡ଼ୁଛି । ଆଜିର ଦୁନିଆରେ ଜାତୀୟତାର ଅର୍ଥ ସାଂସ୍କୃତିକ ଦୃଷ୍ଟିକୋଣରୁ ଯାହା, ରାଜନୈତିକ ଦୃଷ୍ଟିକୋଣରୁ ଠିକ୍ ତାହା ନୁହେଁ । ଆଜିର ସମାଜ ପାଇଁ ପରସ୍ପର ନିର୍ଭରଶୀଳତା ଏକ ବଡ଼କଥା । ଆମେ ଇଚ୍ଛାକଲେ ମଧ୍ୟ ସମାଜରୁ ଅଲଗା ହୋଇ ରହିପାରିବା ନାହିଁ । ଏକ ଶାନ୍ତିପୂର୍ଣ୍ଣ, ଶୃଙ୍ଖଳିତ ଆନ୍ତର୍ଜାତୀୟ ସମାଜ ଗଠନ କରିବାକୁ ଆମେ ଚାହୁଁ । 'ବସୁଧୈବ କୁଟୁମ୍ବକମ୍'ର—ଭାବ ସମସ୍ତଙ୍କ ମଧ୍ୟରେ ସୃଷ୍ଟି ହେବାର ଆବଶ୍ୟକତା ବର୍ତ୍ତମାନ ରହିଛି ।

ଆମେ ସମସ୍ତେ ଯେ ଗୋଟିଏ ସଂସାରର ମଣିଷ, ଏହି ଭାବ ବୃଦ୍ଧି ହେବା ନିତାନ୍ତ ଦରକାର । ଯେଉଁମାନେ ଆମ ଜାତିର ଆମେ ତାଙ୍କୁ ପ୍ରଶଂସା କରୁ, ଯେଉଁମାନେ ବିଦେଶୀ ଆମେ ତାଙ୍କୁ ଘୃଣା କରୁ—ଆଜିର ଅବ୍ୟକତାର ଏହା ଚିହ୍ନ । ମଣିଷ ପୃଥିବୀର ବିଭିନ୍ନ ଅଂଶରେ ଅସୁମାର ସଫଳତା ଲାଭ କରିଛି, ସେମାନଙ୍କର ସଫଳତା ପାଇଁ ଆମେ ସମସ୍ତେ ଗର୍ବିତ ହେବା ଉଚିତ । ବିଶ୍ୱଜାତୀୟତା ସୃଷ୍ଟି-କରିବାର ସମୟ ବର୍ତ୍ତମାନ ଆସି ପହଞ୍ଚିଛି । ସାରା ମାନବ ଜାତି ହିଁ ଆମର ପ୍ରକୃତ ଜାତି । ପୃଥିବୀର ଅନେକ ଜାତି ଏହି ପ୍ରଦର୍ଶନୀରେ ଭାଗ ନେଇଛନ୍ତି । ଲୋକମାନଙ୍କୁ ଏକତ୍ରିତ କରିବାର ଏହା ଏକ ପନ୍ଥା ଓ ସମସ୍ତଙ୍କ ମଧ୍ୟରେ ଏକତ୍ୱଭାବ ସୃଷ୍ଟି କରିବାର ଏହା ଏକ ଉପାୟ । ନିଉଟନ୍ କହିଥିଲେ, "ଲୋକମାନେ ବହୁତ କାନ୍ଥ ବା ବାଡ଼ ପକାଇଛନ୍ତି; କିନ୍ତୁ ସେମାନେ ଯଥେଷ୍ଟ ପରିମାଣରେ ସେତୁ ନିର୍ମାଣ କରିନାହାନ୍ତି ।" **(Men build too many walls and not enough bridges.)**

ଭବିଷ୍ୟତ ଶିଶୁମାନଙ୍କ ଉପରେ ନିର୍ଭର କରେ । ଆମର ବଡ଼ ବଡ଼ ପୂଜ୍ୟ ନେତା, ଯଥା—ଗାନ୍ଧି, ନେହେରୁ, ରବୀନ୍ଦ୍ରନାଥ ଠାକୁର ପ୍ରଭୃତି ଶିଶୁମାନଙ୍କୁ ଅନ୍ତର ଦେଇ ଭଲପାଉଥିଲେ । ଶିଶୁମାନଙ୍କର ଉନ୍ନତିକଳ୍ପେ କାର୍ଯ୍ୟ କରିବା ହିଁ ବର୍ତ୍ତମାନର ଯୁଗଧର୍ମ ।

## ପଠନ ଅଭ୍ୟାସ

ରାଧାକୃଷ୍ଣନ୍ ଜଣେ ଉଚ୍ଚକୋଟିର ଲେଖକ । ସେ ଶ୍ରେଷ୍ଠ ବଡ଼ ସବୁ ପ୍ରକାର ପୁସ୍ତକ ପଠନ ପାଇଁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଥିଲେ । ଥରେ ଏକ ପୁସ୍ତକ ଉତ୍ସବ ଉଦ୍‌ଘାଟନ କରିବାକୁ ଯାଇ ସେ କହିଥିଲେ, "ସାଧାରଣତଃ ଯୁବାବସ୍ଥାରେ ଆମେ ଯେଉଁ ପୁସ୍ତକ ପାଠକରୁ, ଆମ ଜୀବନକୁ କିପରି ଭାବରେ ତାହା ପ୍ରଭାବିତ କରେ ଆମେ ଜାଣିପାରୁ ନାହୁଁ । ଆଜି ଆମେ ବିଭିନ୍ନ ଉପାୟରେ ଜ୍ଞାନ ଆହରଣ କରୁଛୁ । ରେଡ଼ିଓ, ସିନେମା, ସମ୍ବାଦପତ୍ର, ଟେଲିଭିଜନ ପ୍ରଭୃତି ଏ ଦିଗରେ ଆମକୁ ସାହାଯ୍ୟ କରୁଛି; କିନ୍ତୁ ଏସବୁ ଭିତରେ ପୁସ୍ତକ ପଠନ ସବୁଠାରୁ ବଳି ଅଧିକ ଓ ଅତ୍ୟନ୍ତ ଫଳପ୍ରଦ । ଯାନ୍ତ୍ରିକ ଶିକ୍ଷାପଦ୍ଧତିଠାରୁ ପୁସ୍ତକ ପଠନ ସମ୍ପୂର୍ଣ୍ଣ ଭିନ୍ନ । ସ୍ୱାଧ୍ୟାୟ କମ୍ବା ଅଧ୍ୟୟନକୁ ଆମେ ଉପଭୋଗ କରିପାରୁ । ପୁସ୍ତକ ମଧ୍ୟରେ ନିଜକୁ ବୁଡ଼ାଇ ରଖିବା ଅର୍ଥ ଆମେ ଏକାକୀ ନୋହୁ । ପୁସ୍ତକର ସାନିଧ୍ୟ ମଣିଷର ଏକାକୀଭାବ ଦୂରକରିଦିଏ ।"

ଜଣେ ବିଖ୍ୟାତ ଲେଖକ ଲେଖିଛନ୍ତି, "ମଣିଷ ତା'ର ନିର୍ଜନତାରେ ଯାହା ସୃଷ୍ଟି କରେ ତାହାହିଁ 'ଧର୍ମ' ।" କଳା, ସାହିତ୍ୟ, ବିଜ୍ଞାନ, ଉଦ୍ଭାବନ ଓ ଆବିଷ୍କାର ପ୍ରଭୃତି ସେ ଧର୍ମର ସୁଫଳ ବା ପରିପ୍ରକାଶ ।"

ଆଜିର ଦୁନିଆରେ ଆମେ ଆସ୍ତେ ଆସ୍ତେ ଦଳଗତ ଜୀବନ ଆଡ଼କୁ ଅଧିକ ଭାବରେ ଆକର୍ଷିତ ହେଉଛୁ । ଆମେ ଯେତେବେଳେ ଟିକିଏ ବିଶ୍ରାମ ପାଉ ସେତେବେଳେ ପାର୍ଟି, କ୍ଲବ୍ ଏବଂ ଅନ୍ୟାନ୍ୟ ସାମାଜିକ ଦଳଗତ କାମରେ ନିଜକୁ ନିୟୋଜିତ କରୁ । ଆମେ ଏକାକୀ ଟିକିଏ ନିର୍ଜନତା ଭୋଗ କରିବାକୁ ବିମୁଖ, ଏକୁଟିଆ ଟିକିଏ ବସି ଚିନ୍ତା କରିବା, ପର୍ଯ୍ୟବେକ୍ଷଣ କରିବା ପାଇଁ ଆଗ୍ରହହୀନ । ଅନ୍ୟର ଗହଣରେ ଆମକୁ ଆନନ୍ଦ ମିଳେ । କିନ୍ତୁ ନିଜକୁ ନିଜେ ନିର୍ଜନତା ଭିତରେ ପାଇ ମଣିଷ ଆନନ୍ଦିତ ନୁହେଁ । ପାସ୍କଲଙ୍କ ମତରେ, "ମଣିଷ ଗୋଟିଏ କୋଠରିରେ ନିଶ୍ଚଳଭାବରେ ଏକାକୀ ବସିବାକୁ ଅସମର୍ଥ । ଏହି ଧୈର୍ଯ୍ୟହୀନତା ପୃଥିବୀର ସମସ୍ତ ଅମଙ୍ଗଳର

କାରଣ ।" ପୁସ୍ତକ ଅଧ୍ୟୟନ ନିର୍ଜନତାକୁ ଉପଭୋଗ କରିବାର ଅଭ୍ୟାସ ସୃଷ୍ଟି କରିବା ସହିତ ପ୍ରକୃତ ଆନନ୍ଦ ପ୍ରଦାନ କରିଥାଏ ।

ବର୍ତ୍ତମାନ ସବୁରି କଣ୍ଠରୁ ଶୁଣାଯାଉଛି, ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସମାଜର ପ୍ରତ୍ୟେକ ସ୍ତରରେ ମାନ କମି କମି ଯାଉଛି । ଏ ପ୍ରକାର ଅଧଃପତନ ପାଇଁ ବ୍ୟକ୍ତି ହିଁ ଦାୟୀ । ରାଜନୈତିକ, ଆର୍ଥନୀତିକ ତଥା ସାମାଜିକ କ୍ଷେତ୍ରରେ ଏହାର ଢେର ପ୍ରମାଣିତ ହୋଇଛି । ଆମେ ବ୍ୟକ୍ତିର ପ୍ରକୃତ ପରିବର୍ତ୍ତନ କରିପାରିଲେ ସବୁ ସୁଧୁରିଯାଇପାରିବ । ମାନବ-ଜାତିର ଗୁଣାତ୍ମକ ବିକାଶ ପାଇଁ ସାହିତ୍ୟ ଯଥେଷ୍ଟ ସାହାଯ୍ୟ କରେ । 'ସହିତ' ଶବ୍ଦରୁ ସାହିତ୍ୟର ସୃଷ୍ଟି । ଯାହାର ଅର୍ଥ ସହିତତ୍ୱ, ହିତତ୍ୱ ବା ହିତୋପଯୋଗିତା ।

ଆମେ ଯେତେବେଳେ ଉଚ୍ଚକୋଟିର ସାହିତ୍ୟ ପାଠକରୁ ଆମର ମନ ତା' ଭିତରେ ଥିବା ଭାବରାଜି ସହିତ ମିଶିଯାଏ । ବିଖ୍ୟାତ ପୁସ୍ତକ ପଠନ-ଦ୍ୱାରା ପାଠକର ମାନସିକ ସ୍ୱାସ୍ଥ୍ୟ ବିକଶିତ ହୁଏ । ଆମର ମନ ବ୍ୟାପକ ତଥା ଦୃଷ୍ଟିକୋଣ ଉଦାର ହୁଏ । ଏହାଦ୍ୱାରା ନୈତିକ ତୃପ୍ତି ମଧ୍ୟ ମିଳିଥାଏ । କେତେକ ପୁସ୍ତକ ଅଛି ଯାହାର ପଠନରେ ଆନନ୍ଦ ମିଳେ, କେତେକ ଉପଦେଶ ଦିଅନ୍ତି ଓ ଆଉ କେତେକ ମଣିଷ ପ୍ରକୃତିର ପରିବର୍ତ୍ତନ କରନ୍ତି । ଏଇ ଶେଷ ପ୍ରକାରର ପୁସ୍ତକଗୁଡ଼ିକୁ ପଢ଼ି ତାକୁ ମଧ୍ୟ ହଜମ କରିବା ଉଚିତ ।

ନୈତିକ ପରିତୃପ୍ତି ହିଁ ମାନବ ଜୀବନର ଲକ୍ଷ୍ୟ । ଆନନ୍ଦ ବିଜୟର ଏକ ଚିହ୍ନ । ଆମୋଦ ଓ ତୃପ୍ତିଠାରୁ ଆନନ୍ଦ ବହୁ ଉଚ୍ଚରେ; ତେଣୁ ଯେଉଁ ପୁସ୍ତକ ପଠନଦ୍ୱାରା ଆନନ୍ଦ ମିଳେ, ତାହା ଅନ୍ୟ ପୁସ୍ତକଠାରୁ ଅଧିକ ଉପାଦେୟ । ଆନନ୍ଦ ହିଁ ପୋଷିତପଣିଆର ଚିହ୍ନ । କୌଣସି ପୁସ୍ତକକୁ ପଢ଼ି କିମ୍ବା ସଙ୍ଗୀତକୁ ଶୁଣି ସେଥିରୁ ଆନନ୍ଦ ପାଇବାର ଅର୍ଥ ତା' ମଧ୍ୟରେ ଏକୀଭୂତ ହେବା କିମ୍ବା ଲୀନ ହୋଇଯିବା । ଆମୋଦଠାରୁ ଆନନ୍ଦ ଅଧିକ ଦୀର୍ଘସ୍ଥାୟୀ ଏବଂ ଏହାକୁ ଯନ୍ତ୍ରଣା ଭିତରେ ମଧ୍ୟ ଭୋଗ କରାଯାଇପାରେ । ଯାହା ଆନନ୍ଦମୟ ତାହା ଅବ୍ୟକ୍ତ ।

ଯେ ଦ୍ରଷ୍ଟା ନୁହେଁ ସେ ସ୍ରଷ୍ଟା ହୋଇପାରେନା । ଯେ ଯେତେ ଗଭୀର ଭାବରେ ଦେଖିପାରେ ସେ ସେତେ ଉନ୍ନତ ସାହିତ୍ୟ ସୃଷ୍ଟି କରିପାରେ । ମଣିଷ କଳ୍ପନାର ଚରମ ସୃଷ୍ଟି ହିଁ ବିଶ୍ୱସାହିତ୍ୟର ସର୍ବୋତ୍ତମ ରଚନା । ସେ ସବୁର ଅଧିକାଂଶ ଅତୀତର ପ୍ରଖ୍ୟାପକ, ତାହାକୁ ଅଧ୍ୟୟନ କଲେ ସହସ୍ର ସହସ୍ର ବର୍ଷ ତଳର ମହାନ୍ ମଣିଷର ମନ ସହିତ ସମ୍ପର୍କ ସ୍ଥାପିତ ହୁଏ । ଆମେ ଯଦି ଆମର ଅତୀତର ସାମାଜିକ ଚଳଣି ଓ ରୀତିନୀତି ବିଷୟରେ ସଚେତନ ହେବାକୁ ଚାହୁଁ ତା'ହେଲେ ତାକୁ ପାଠ କରିବା ଉଚିତ ।

ଖାଲି କଥାରେ କହି କିମ୍ବା ବାପମା'ଙ୍କ କାମକୁ ଅନୁକରଣ କରି କେତେଟା କାମ କରିଦେଲେ ପରମ୍ପରା ରକ୍ଷା କରାଯାଇ ପାରିବ ନାହିଁ । ତା' କରିବା ଅର୍ଥ ସେମାନଙ୍କ ମହତ୍ତ୍ୱକୁ କ୍ଷୁଣ୍ଣ କରିବା । ସୁଚିନ୍ତିତ ଗଠନ-ମୂଳକ ପରିବର୍ତ୍ତନ ଓ ନବୀକରଣ ବିନା କୌଣସି ପରମ୍ପରା ତିଷ୍ଠି ରହି-ପାରେନା । ଯୁଗ ସମସ୍ୟା ଓ ଯୁଗରୁଚିର ପ୍ରଭାବ ଯେପରି ଭାବରେ ବ୍ୟକ୍ତି ଉପରେ ପଡ଼େ, ସେ ସେହିପରି ଭାବରେ ତା'ର ପ୍ରତିଦାନ ଦିଏ ।

ଆଜି ଯୁଗର ତିନୋଟି ପ୍ରଧାନ ଦିଗ ଅଛି । ପ୍ରଥମରେ ବୈଜ୍ଞାନିକ ଓ ପ୍ରଯୁକ୍ତି କ୍ଷେତ୍ରରେ ବିପ୍ଳବ, ଦ୍ୱିତୀୟରେ ଏସିଆ ଓ ଆଫ୍ରିକାର ପରାଧୀନ ଦେଶମାନଙ୍କର ସ୍ୱାଧୀନତା ଏବଂ ତୃତୀୟରେ ପୃଥିବୀର ଏକତା । ଯେଉଁ ପୁସ୍ତକ ଆମ୍ଭମାନଙ୍କର ବୈଜ୍ଞାନିକ ରୁଚି ଓ ଦୃଷ୍ଟିକୋଣ ସୃଷ୍ଟି କରିପାରିବ, ସେସବୁ ପୁସ୍ତକ ପାଠ କରିବା ଉଚିତ । ଏସିଆ ଓ ଆଫ୍ରିକା ଦେଶସମୂହର ଇତିହାସ ଆମକୁ ପାଠ କରିବାକୁ ପଡ଼ିବ । ସେମାନଙ୍କର ଆଶା, ଆକାଙ୍‌କ୍ଷା ବିଷୟରେ ଜାଣିବାକୁ ହେବ । ପୃଥିବୀ ଭିତରେ କିପରି ଏକତା ବୃଦ୍ଧି କରାଯାଇପାରିବ ସେ ଦିଗରେ ମଧ୍ୟ ଜାଣିବାକୁ ହେବ । ସାରା ମାନବଜାତିର ଜ୍ଞାନ ସମ୍ପତ୍ତି ଉପରେ ପୃଥିବୀର ପ୍ରତ୍ୟେକଙ୍କର ଅଧିକାର ରହିଛି । ବ୍ୟକ୍ତିର ହୃଦୟରେ ସାରା ଅତୀତ ଓ ସାରା ପୃଥିବୀ ଏହାଦ୍ୱାରା ସଜାଗ ହୋଇ ରହିପାରିବ । ତେବେ ଭାଷାଗତ ବାଧା ଅତିକ୍ରମ କରାଯାଇ-ପାରିଲେ ଏହା ସମ୍ଭବ ହେବ । ପୁସ୍ତକଗୁଡ଼ିକ ଗୋଟିଏ ଗୋଟିଏ ସେତୁ,

ଯାହା ମାଧ୍ୟମରେ ଆମେ ବିଭିନ୍ନ ସଂସ୍କୃତି ମଧ୍ୟରେ ବନ୍ଧନ ସୃଷ୍ଟି କରିପାରୁ । ସଂସ୍କୃତିର ବିରୋଧ ଭାଙ୍ଗିଦେବାକୁ ହେବ ।

ପ୍ରତ୍ୟେକ ଜାତି ସାରା ମାନବ ଜାତିର କଲ୍ୟାଣ କରିବା ଦିଗରେ ଚିନ୍ତା କରିବା ଉଚିତ । କୋମଳ ପ୍ରକୃତିର ଲୋକମାନେ ଏପରି କେତେକ ଲୋକଙ୍କ ସଂସ୍ପର୍ଶରେ ଆସନ୍ତି, ଯେଉଁମାନଙ୍କର ସ୍ନେହ, ପ୍ରେମ, କୋମଳତା ପ୍ରଭୃତି ବିଶେଷ ଭାବରେ ନଥାଏ । ସେମାନେ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଭୟ ଓ ଘୃଣା କରନ୍ତି । ଏସବୁ ସନ୍ଦେହ ଓ ଘୃଣା, ସୁବୁଝାମଣା ଓ ପ୍ରେମ ଅପେକ୍ଷା ସହଜରେ ମଣିଷ ପାଖକୁ ଆସିପାରେ । ମଣିଷ ଏସବୁ ଦୂର କରିବା ଉଚିତ । ସାରା ମାନବ ଜାତିର କଲ୍ୟାଣ କରିବା ଦିଗରେ ପ୍ରତ୍ୟେକ ଦେଶ ଓ ଜାତି ତାଲିମପ୍ରାପ୍ତ ହେବା ଉଚିତ । ଯେତେବେଳେ ଆମର ବିଚାରଶୀଳତା ବିପର୍ଯ୍ୟସ୍ତ ହୋଇଯାଏ, ସେତେବେଳେ ଏହି ପୁସ୍ତକଗୁଡ଼ିକ ଆମର ଉପକାରରେ ଲାଗେ ।

ଆମମାନଙ୍କ ଭିତରୁ ଅନେକ ପ୍ରକୃତରେ ମଣିଷ ନୁହନ୍ତି, ସେମାନେ ମଣିଷର ଛାୟାମାତ୍ର । ଆମେ ସର୍ବଦା ପରସ୍ପରବିରୋଧୀ ଭାବବୋଧ ଦ୍ୱାରା ଯନ୍ତ୍ରଣାକ୍ଷୁବ୍ଧ । ଭୟ, ସନ୍ଦେହ, ଲୋଭ, ଈର୍ଷା, କ୍ରୋଧ ଏବଂ ସେହିପରି ଦୟା, ଶୁଭ ଭାବନା, ସେବା ଓ ପରସ୍ପରକୁ ସାହାଯ୍ୟ କରିବାର ମନୋଭାବ ଆମ ଭିତରେ ଅଛି । ଯଦି ଆମେ ଏକ ପୂର୍ଣ୍ଣାଙ୍ଗ ମାନବସମାଜ ଗଠନ କରିବାକୁ ଚାହୁଁ, ତା'ହେଲେ ଆମକୁ ପ୍ରଥମ ଗୁଣଗୁଡ଼ିକ ପରିହାର କରି ଦ୍ୱିତୀୟ ଗୁଣଗୁଡ଼ିକୁ ବିକଶିତ କରିବାକୁ ପଡ଼ିବ ।

ଏକ ସର୍ବସାଧାରଣ ଆଧ୍ୟାତ୍ମିକ ଜାଗୃତି ଅପରିହାର୍ଯ୍ୟ । ସାଂପ୍ରଦାୟିକ ତୁଚ୍ଛ ଭାବନା ଭିତରେ ଆମେ ଆମ ଲୋକମାନଙ୍କର ମନକୁ କ୍ଳୀବ କରିଦେବା ଉଚିତ ନୁହେଁ । ପୁରାତନ ପଦ୍ଧତି ଅନୁସାରେ କିଛି ସମୟ ପାଇଁ ନୀରବ ପ୍ରାର୍ଥନା ଓ ଧର୍ମଗ୍ରନ୍ଥ ପଠନଦ୍ୱାରା ଦିନର କାର୍ଯ୍ୟ ଆରମ୍ଭ କରିବା ଏକ ସୁସ୍ଥ ପରମ୍ପରା । ଏ ସଂସାରରେ ସବୁ ଅନିତ୍ୟ । ଧନ, ସମ୍ପତ୍ତି, ରାଜ୍ୟ କିଛି ରହିବ ନାହିଁ, ଏପରିକି ବିରାଟ ଜାତିଗୁଡ଼ିକ ମଧ୍ୟ ଚିରନ୍ତନ ନୁହନ୍ତି; କିନ୍ତୁ ସତ୍ୟ, ସୌନ୍ଦର୍ଯ୍ୟ ଏବଂ ପ୍ରେମ କରୁଣାର ମୃତ୍ୟୁ ନାହିଁ ।

## ମଣିଷର ଶକ୍ତି

ମଣିଷ ଯୁଦ୍ଧ ପରେ ଯୁଦ୍ଧ କରିଛି, କିନ୍ତୁ ମଣିଷଜାତି ତଥାପି ବଞ୍ଚିଛି । ବିଗତ ଦୁଇଟି ବିଶ୍ୱଯୁଦ୍ଧ ପୃଥିବୀରେ କରାଳ ଲୀଳା ସୃଷ୍ଟି କରିଥିଲେ ମଧ୍ୟ ତଥାପି ଆମେ ବଞ୍ଚିଛେ; କିନ୍ତୁ ତୃତୀୟ ବିଶ୍ୱଯୁଦ୍ଧ ହେଲେ ଆମେ ବଞ୍ଚିପାରିବା ନାହିଁ । କାରଣ ସେ ଯୁଦ୍ଧ ପରମାଣୁ ଯୁଦ୍ଧ । ସେଥିରୁ ରକ୍ଷା ପାଇବା ମଣିଷଜାତି ପକ୍ଷରେ ସମ୍ଭବ ନୁହେଁ ।

ମଣିଷ ପୂର୍ବରୁ ଯେପରି ରାଜନୈତିକ ସ୍ୱାର୍ଥକୁ ସର୍ବସ୍ୱ କରି ତା'ର ଆଚରଣ ଦେଖାଇଛି ଯଦି ସର୍ବଦା ସେଇଆ କରିଚାଲେ, ତେବେ ମାନବଜାତି ନିଶ୍ଚୟ ଧ୍ୱଂସ ହୋଇଯିବ । ଯେଉଁ ଶକ୍ତି ମଣିଷକୁ ସର୍ବଦା ସଂଘର୍ଷ ଭିତରକୁ ଟାଣିଆଣିଛି ତାହାର ଚେର ଖୁବ୍ ତଳେ । ତାହା ମଣିଷକୁ ସର୍ବଦା ପ୍ରଭାବିତ କରିଛି । ପ୍ରଶ୍ନ ହେଉଛି, ସେ ଶକ୍ତିକୁ ଆମେ କିପରି ଭାବରେ ଦମନ କରିବା । ମାନବଜାତିକୁ ବଞ୍ଚାଇ ରଖିବା ପାଇଁ ତାହାକୁ କିପରି ନିୟନ୍ତ୍ରଣ କରିଯାଇ ପାରିବ, ତାହା ବିଚାର କରିବା ଉଚିତ ।

ଆଜି ମଧ୍ୟ ମଣିଷ ପ୍ରକୃତି ଭିତରେ ଅନୁଭୂତି, ଆବେଗ, ଭାବପ୍ରବଣତା ପ୍ରଭୃତି ପୂର୍ବପରି ରହିଛି । ତା' ସହିତ ମାନବ ଇତିହାସ ସୃଷ୍ଟି ହେଲା ଦିନଠାରୁ ମଣିଷକୁ ଦୁର୍ନୀତିଗ୍ରସ୍ତ କରିବାରେ ସାହାଯ୍ୟ କରୁଥିବା ଘୃଣା ଓ କାମନା ପ୍ରଭୃତି ମଧ୍ୟ ତଥାପି ରହିଛି । ଅନ୍ୟପକ୍ଷରେ ଦେଖିବାକୁ ଗଲେ ମଣିଷ ଚରିତ୍ରରେ ସୌନ୍ଦର୍ଯ୍ୟ ପ୍ରତି ଅନୁରକ୍ତି, ନୈତିକ ଅଭିଳାଷ, ପରସ୍ପର ପ୍ରତି ପ୍ରେମଭାବ ଓ ନିଜଠାରୁ ମହତ୍ତର ଅନ୍ୟ କୌଣସି ଏକ ଶକ୍ତି ପ୍ରତି ବିନମ୍ରଭାବ ପ୍ରକାଶ କରିବା ମଧ୍ୟ ରହିଛି । ମଣିଷର ଏହି ସୃଜନାତ୍ମକ ପ୍ରବୃତ୍ତି ତା'ର ଜୀବନକୁ ମନୋଜ୍ଞ ଏବଂ ମଧୁର କରିଏ । ଏହାର ପ୍ରାଚୁର୍ଯ୍ୟ ଜୀବନକୁ ପରିପୂର୍ଣ୍ଣ ତଥା ଆମୋଦିତ କରିଏ । କିନ୍ତୁ ପରି ମୁହୂର୍ତ୍ତରେ ମଣିଷକୁ ତା'ର ସେହି ଆଦିମ ପ୍ରବୃତ୍ତି ଗ୍ରାସକରେ ଓ ଏହି ମହନୀୟ ପ୍ରବୃତ୍ତିଗୁଡ଼ିକ ଲୁପ୍ତହୋଇଯାଏ । ସେଇଥିପାଇଁ ଭାରତ, ଗ୍ରୀସ୍ ଓ ପାଶ୍ଚାତ୍ୟ ଜଗତର ଧର୍ମଗୁରୁମାନେ କହିଛନ୍ତି, "ମଣିଷ ଯେ ପର୍ଯ୍ୟନ୍ତ ତା'ର

ନିମ୍ନ ଆଦିମ ପ୍ରବୃତ୍ତି ତଥା ନିଜର ପ୍ରକୃତିକୁ ନବଦଳାଇଛି, ସେ ପର୍ଯ୍ୟନ୍ତ ସେ ଜଣେ ପ୍ରକୃତ ଧର୍ମିଙ୍କ ବ୍ୟକ୍ତି ହୋଇପାରିବ ନାହିଁ ।"

ପୃଥିବୀର ମହାନ୍ ଧର୍ମଗୁରୁମାନେ ସତ୍ୟର ପ୍ରଚାର କରିଦେଲେ ଯଥେଷ୍ଟ ହେଲ ନାହିଁ । ସାଧାରଣ ଲୋକ ସେମାନଙ୍କର ଦଳଗତ ବା ସାମୂହିକ ବ୍ୟବହାରରେ ଏହି ସତ୍ୟକୁ ପ୍ରୟୋଗ ନକଲେ ଏହାର ଅର୍ଥ କିଛି ନାହିଁ । ସତ୍ୟ ହିଁ ଶାଶ୍ୱତ ଓ ଦୈନନ୍ଦିନ ଜୀବନର ପ୍ରତ୍ୟେକ ଅନୁଭୂତିରେ ଏହା ଅଙ୍ଗାଙ୍ଗୀଭାବରେ ଜଡ଼ିତ । ଆମେ ନିଜ ଭିତରେ ସର୍ବସାଧାରଣ ବିଚାର ଓ ସର୍ବସାଧାରଣ ଆଚରଣଗତ ସୁଗୁଣ ବିକାଶ କରିବା ଉଚିତ ।

ଥୁସିଡାଇଡ଼ସ୍ ବହୁତ ଦିନ ତଳେ କହିଥିଲେ, "କ୍ଷମତାଲାଳସା ଓ ଶାସନମୋହ ଏକ ଦୁଷ୍ଟଚରିତ୍ରା ବେଶ୍ୟା ସହିତ ସମାନ । ଏହାର କବଳରେ ଯେଉଁ ଲୋକ ବା ଦେଶ ପଡ଼େ ସେ ବିପଥଗାମୀ ହୋଇ ଧ୍ୱଂସର ସମ୍ମୁଖୀନ ହୁଏ ।"

ଆମେ ଯଦି ଅତୀତରୁ କିଛି ନଶିଖିବା, ତା'ହେଲେ ପୁଣି ଥରେ ତା'ର ପୁନରାବୃତ୍ତି କରିବାକୁ ପଡ଼ିବ । ଆମର ବଂଶଧରମାନେ ପଥହରା ହୋଇଥିବା ପରି ମନେହୁଏ । ଆମେ ମନେରଖିବା ଉଚିତ ଯେ, ପୃଥିବୀରେ କୌଣସି ବସ୍ତୁର ଭୁଲ୍ ହୋଇନାହିଁ । ପରମାଣୁ ବୋମା କିମ୍ବା ଆଣବିକ ଅସ୍ତ୍ରଶସ୍ତ୍ର ପାଖରେ କିଛି ଭୁଲ୍ ନାହିଁ । ଯଦି କେଉଁଠାରେ କିଛି ଭୁଲ୍ ଅଛି ତା' ହେଉଛି ମଣିଷର ଚରିତ୍ରରେ ଓ ଶକ୍ତିରେ । ମଣିଷ ପ୍ରକୃତିରେ ଏକ ଚେତନଶୀଳ ଜୀବ । ସେ ସମସ୍ତ ଗୂଢ଼ ତତ୍ତ୍ୱର ସନ୍ଧାନୀ । ଆମେ ଯଦି ଅନ୍ତତଃ ଏତିକି ଅନୁଭବ କରିପାରିବା, ତା'ହେଲେ ନୀଚ ଅଭିଳାଷରୁ ନିଜକୁ ରକ୍ଷାକରି ଉନ୍ନୀତ ହୋଇପାରିବା ।

× × × ×

ମଣିଷ ଆଜି ଅନ୍ତରୀକ୍ଷ ଯାତ୍ରାକରି ଚନ୍ଦ୍ରଲୋକକୁ ଗଲାଣି, ସେଠାରେ ଅନେକ ଅନୁସନ୍ଧାନ କଲାଣି । ଯଦି କେହି ଜଣେ ପଚାରେ, ଏସବୁ କିପରି ସମ୍ଭବ ହେଉଛି, ତା'ର ଏକମାତ୍ର ଉତ୍ତର ହେଉଛି, ମଣିଷର ଶକ୍ତି । ଯେଉଁ

ମହାନ୍ ଶକ୍ତି ମଣିଷ ଭିତରେ ଲୁଚିରହିଛି ଓ ଯାହା ପ୍ରତ୍ୟେକଙ୍କ ଭିତରେ ଅଛି । ଆମେ ଏପର୍ଯ୍ୟନ୍ତ ଯାହାକିଛି ଉନ୍ନତ ଓ ଅଗ୍ରଗତି କରିଛେ, ତାହା କେବଳ ମଣିଷର ଏଇ ଲୁକ୍‌କାୟିତ ଶକ୍ତି ପାଇଁ ସମ୍ଭବ ହୋଇଛି । ଏ ଶକ୍ତି ହିଁ ପ୍ରେମର ଶକ୍ତି, କରୁଣାର ଶକ୍ତି ।

## ଭାରତୀୟମାନଙ୍କ ମଧ୍ୟରେ ଏକତା

ରାଧାକୃଷ୍ଣନ୍ ୧୯୬୩ ମସିହା ଅକ୍ଟୋବର ମାସ ଏକ ତାରିଖରେ ବମ୍ବେଠାରେ ଏହି ଭାଷଣଟିକୁ ଦେଇଥିଲେ । ସେ କହିଥିଲେ, "ଭାରତୀୟମାନଙ୍କ ଭିତରେ ଏକତା ବୃଦ୍ଧି କରିବା ଆମର ପ୍ରଧାନ କର୍ତ୍ତବ୍ୟ । କେବଳ ନିଜ ଦେଶ ଭିତରେ ନୁହେଁ, ଭାରତ ବାହାରେ ବି ଯେଉଁ ଭାରତୀୟମାନେ ଅଛନ୍ତି ଏ ସମସ୍ତଙ୍କ ଭିତରେ ଏକତା ପ୍ରତିଷ୍ଠିତ ହେବା ଉଚିତ ।

ଆମ ଭାରତୀୟ ସଂସ୍କୃତି ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀଠାରୁ ବିଦେଶରେ ପ୍ରସାରିତ ହେଉଛି । ହୁଏତ ଏହା ଟିକିଏ ଆଗରୁ ହୋଇପାରେ କିମ୍ବା ପଛରେ ହୋଇପାରେ । ତୁମେ ଯେତେବେଳେ ଇଣ୍ଡୋନେସିଆ, ଇଣ୍ଡୋଚାଇନା, କାମ୍ବୋଡ଼ିଆ, ପୂର୍ବ ଆଫ୍ରିକା କିମ୍ବା ଦକ୍ଷିଣ ଆଫ୍ରିକା ଏବଂ ଅନ୍ୟାନ୍ୟ ଜାଗାକୁ ଯିବ, ସେତେବେଳେ ସେ ଜାଗାମାନଙ୍କରେ ଆମର ଦେଶର ସଂସ୍କୃତି ଦେଖିବାକୁ ପାଇବ ।

ମୁଁ ପ୍ରଥମରୁ ପରିଷ୍କାର ଭାବରେ କହିଦେବାକୁ ଚାହେଁ ଯେ, ଏ ପ୍ରକାର ସମ୍ପର୍କ ପଛରେ ଆମର କୌଣସି ରାଜନୈତିକ ଉଦ୍ଦେଶ୍ୟ ନାହିଁ ବା ଏହି ରାଜ୍ୟଗୁଡ଼ିକୁ କୌଣସି ଢଙ୍ଗରେ ଜୟ କରିବାର ମନୋବୃତ୍ତି ଆମର ନାହିଁ । ଆମର ସେ ମନୋବୃତ୍ତି କେବେ ନଥିଲା କିମ୍ବା ଆଜି ବି ନାହିଁ । ଆମର ପ୍ରଭାବ ପ୍ରଧାନତଃ ସଂସ୍କୃତି, ସାହିତ୍ୟ ଓ କଳାଭିତ୍ତିକ ଏବଂ ଧର୍ମମୂଳକ । ବୁଦ୍ଧଦେବଙ୍କ ପ୍ରତି ପୃଥିବୀର ଅନେକ ଦେଶ ଭକ୍ତି ପ୍ରଦର୍ଶନ କରନ୍ତି । ତାଙ୍କ ଜୀବନଧାରା ପାଇଁ ପ୍ରତ୍ୟେକ ଭାରତୀୟ ଗର୍ବିତ । ସେ କହିଛନ୍ତି, ତୁମେ ଯଦି ଜୀବନ-ଯନ୍ତ୍ରଣାରୁ ରକ୍ଷା ପାଇବାକୁ ଚାହଁ, ତା'ହେଲେ ତୁମ

ଭିତରେ ସୁପ୍ତ ବୁଦ୍ଧିମତ୍ତା ଓ କରୁଣା ବିକାଶ କରିବାକୁ ହେବ । ଯାହାକୁ ବୁଦ୍ଧଙ୍କ ଭାଷାରେ କୁହାଯାଏ 'ପ୍ରଜ୍ଞା ଓ କରୁଣା'ର ବିକାଶ । 'ପ୍ରଜ୍ଞା' ମଣିଷର ବୋଧଶକ୍ତିକୁ ଗଭୀରତର କରି ତାକୁ ଏକ ଚେତନଶୀଳ ଜୀବରେ ପରିଣତ କରାଏ । 'କରୁଣା' ଏ ପ୍ରକାର ଏକ ଗୁଣ, ଯାହା ମାଧ୍ୟମରେ ପ୍ରଜ୍ଞାର ପ୍ରକାଶ ସମ୍ଭବ ହୁଏ । କରୁଣା ସାରା ମାନବ ଜାତି ପ୍ରତି ଅଭିପ୍ରେତ । ଏଥିପାଇଁ କୌଣସି ବାଧା ବନ୍ଧନର ପ୍ରଶ୍ନ ନାହିଁ ।

ତୁମେ ନିଜ ଦେଶରେ ଥାଅ ବା ବିଦେଶରେ ଥାଅ, ନିଜକୁ ଭାରତୀୟ କହିବା ଅର୍ଥ ସେଠାରେ ଭୂଗୋଳର ପ୍ରଶ୍ନ ଉଠୁନି । ଏହା ସମ୍ପୂର୍ଣ୍ଣଭାବରେ ଇତିହାସର ଏକ ପ୍ରଶ୍ନ । ତୁମେ କେଉଁ ପରମ୍ପରା ଉପରେ ପ୍ରତିଷ୍ଠିତ, କେଉଁ ଆଦର୍ଶର ଅନୁଗାମୀ ଏବଂ ତୁମେ ଆଜି କାହିଁକି ଭାବୁଛ ଯେ ଭାରତୀୟ ସଂସ୍କୃତିରେ ଏପରି କିଛି ଶକ୍ତି ଅଛି ଯାହାକି ପୃଥିବୀର ସଂଘର୍ଷସଙ୍କୁଳ ଦେଶମାନଙ୍କୁ ଶାନ୍ତି ଦାନ କରିପାରିବ ? ଏ ପ୍ରକାର ପ୍ରଶ୍ନ ମନକୁ ପଶିଲେ ସେଥିପାଇଁ ମନ ଭିତରୁ ଗୋଟିଏ ମାତ୍ର ଉତ୍ତର ଆସେ—ତା' ହେଉଛି "ଅଭୟ, ଅସଙ୍ଗ ଓ ଅହିଂସା ।"

'ଅଭୟ'ର ଅର୍ଥ ଭୟହୀନତା । ଉପନିଷଦର ପ୍ରାରମ୍ଭରେ ଲେଖାଅଛି—

"ଅସତୋ ମା ସଦ୍‌ଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋର୍ମା ଅମୃତଂ ଗମୟ ।"

ଏହି ସଂସାର ଅସତ୍ୟ (ଅସତ୍), ଏହା ବିନାଶଶୀଳ, ଅନ୍ଧକାରମୟ । ଏ ସଂସାରରୁ ମୁଁ କିପରି ନିବୃତ୍ତି ଲାଭ କରିବି ? ଯଦି ଏ ସଂସାର ଅନ୍ଧକାରପୂର୍ଣ୍ଣ ଏବଂ ମୃତ୍ୟୁ ହିଁ ସାର୍ବଜନୀନ ଭାଗ୍ୟ, ତେବେ ମଣିଷ ଏଥିରୁ ରକ୍ଷା ପାଇବାର କୌଣସି ପ୍ରତିଶ୍ରୁତି ନାହିଁ । କିନ୍ତୁ ଉପନିଷଦକାର କହିଛନ୍ତି, ଏ ସଂସାରରେ ନିତ୍ୟତା ପରିବ୍ୟାପ୍ତ ଯାହାକି ସୃଷ୍ଟିକୁ ମହନୀୟ, ଉଜ୍ଜ୍ୱଳ କରିଛି । ଏହା ଭୟରୁ ମଣିଷକୁ ରକ୍ଷାକରେ । ଯଦି ବିନାଶ ହିଁ ଏ ସଂସାରରେ ସତ୍ୟ, ସମସ୍ତର ଅନ୍ତ୍ୟାଗ୍ନିର ଯଦି କେବଳ ସର୍ବସ୍ୱ, ଯଦି ମୃତ୍ୟୁଠାରୁ

ବଳ ଆଉ କିଛି ଅଧିକ ନାହିଁ, ତା'ହେଲେ ଏ ସଂସାରରେ କିଛି ରହିବ ନାହିଁ । ସଭ୍ୟତା, ଐତିହାସିକ କୀର୍ତ୍ତି ଏସବୁ ଢ଼ଳିଯିବ ।

ସଂସାରରେ ଏପରି କିଛି ଅଛି ଯାହାକି ଏହି ପରିବର୍ତ୍ତନର ଧାରାକୁ ଅତିକ୍ରମ କରିପାରେ ? ହଁ ଅଛି । ତା' ହେଉଛି ଏ ସୃଷ୍ଟି ପ୍ରକ୍ରିୟାରେ ନିହିତ ଥିବା ନିତ୍ୟତା, ଯାହାକି ଆମକୁ କିଛି ପରିମାଣରେ ଶାନ୍ତି ଓ ସ୍ୱାଧୀନତା ଦେଇଥାଏ । ବୁଦ୍ଧ ଠିକ୍ ସେଇକଥା କହିଥିଲେ । ସେ ମୃତବ୍ୟକ୍ତି, ରୋଗୀ, ଜରାଗ୍ରସ୍ତ ବ୍ୟକ୍ତି ଓ ଜଣେ ସନ୍ନ୍ୟାସୀଙ୍କୁ ଦେଖିଥିଲେ । ସେ ସନ୍ନ୍ୟାସୀଙ୍କୁ ପଚାରିଲେ, ତୁମେ କିଏ ? ସନ୍ନ୍ୟାସୀ ଉତ୍ତର ଦେଲେ, ଜନ୍ମ ମୃତ୍ୟୁକୁ ଭୟକରି ମୁଁ ମୁକ୍ତିପାଇଁ ଏହି ସନ୍ନ୍ୟାସ ଗ୍ରହଣ କରିଛି । ମୁଁ ଜଣେ ସନ୍ନ୍ୟାସୀ । ବୁଦ୍ଧଦେବ କହିଲେ, "ମୁଁ ଜଣେ ସନ୍ନ୍ୟାସୀ ହେବାକୁ ଚାହେଁ । ମୁଁ ଏ ସଂସାରରୁ ବାହାରିଯାଇ ଏପରି ଏକ ପଥ ଖୋଜିବି ଯାହାକି ମୋତେ ଏହି ସମସ୍ତର ସଂସାରରୁ ଶାଶ୍ୱତ ସଂସାର ଆଡ଼କୁ ନେଇଯିବ ।" ତାହାକୁ ସେ ନିର୍ବାଣ ବୋଲି କହିଥିଲେ ।

× × × ×

'ଅସଙ୍ଗ' ଶବ୍ଦର ଅର୍ଥ ମୋହଶୂନ୍ୟତା । ମଣିଷ ସତ୍ୟର ସନ୍ଧାନ ପାଇବା ପରେ ସଂସାରରୁ ପଳାଇଯିବାର ଆବଶ୍ୟକତା କିଛି ନାହିଁ । ତାକୁ ଏ ସଂସାରରେ ରହି ସର୍ବସାଧାରଣର ସେବାରେ ନିଯୁକ୍ତ ହେବାକୁ ପଡ଼ିବ । କିନ୍ତୁ ମୋହହୀନ ଭାବରେ ସେ ସବୁ କରିବାକୁ ହେବ । ନିର୍ଲିପ୍ତ ସେବା ହିଁ ପ୍ରକୃତ ସେବା ।

'ଅହିଂସା'ର ଅର୍ଥ ହିଂସାହୀନତା । ଏହାର ଅର୍ଥ ନୁହେଁ ଯେ ଡାକ୍ତର ତା'ର ଅପରେସନ୍ କରିବ ନାହିଁ । ଘୃଣାଭାବର ତ୍ୟାଗ ହିଁ ଅହିଂସା । ମଣିଷ ଘଣାହୀନ ହେଲେ, ଅପର ପ୍ରତି ଘୃଣାଭାବ ପୋଷଣ ନକଲେ, ସେ ଅହିଂସା ବୋଲି ଗ୍ରହଣ କରାଯିବ । ପ୍ରତ୍ୟେକେ ଘୃଣାହୀନ ହେବା ଉଚିତ । ଅଭୟ, ଅସଙ୍ଗ ଓ ଅହିଂସା ଏହି ତିନୋଟି ହେଉଛି ଭାରତୀୟ ଜୀବନର ଗୁଣ । ଭାରତୀୟ ସଂସ୍କୃତି ଏହା ଉପରେ ଆଧାରିତ । ଏହା ମଣିଷକୁ ଚରମ ସହନ ଶକ୍ତି ପ୍ରଦାନ କରିଥାଏ ।

ମୁକ୍ତିଲାଭ କରିବାର ଉପାୟ ପ୍ରଦର୍ଶନ କରିବାକୁ ଯାଇ ଉପନିଷଦକାର କହିଛନ୍ତି—ଈଶ୍ୱରଙ୍କ ପାଖରେ ପହଞ୍ଚିବାପାଇଁ ଯେପରି କିଛି ଗୋଟାଏ ସିଧାସଳଖ ସ୍ୱର୍ଣ୍ଣମୟ ପଥ ନାହିଁ । ଯେପରି କିଛି ଚିହ୍ନବର୍ତ୍ତ୍ମ ନରଖି ଆକାଶରେ ପକ୍ଷୀ ଉଡ଼େ, ସମୁଦ୍ରରେ ମାଛ ପହଁରେ, ସେହିପରି ଈଶ୍ୱର-କାମୀ ତା' ପଥର କୌଣସି ଚିହ୍ନ ନରଖି ଈଶ୍ୱରଙ୍କ ପଥରେ ଆଗାଏ । ଈଶ୍ୱରଙ୍କୁ ଲାଭ କରିବାର ଅଜସ୍ର ପଥ ଅଛି । ମତ ଗୋଟିଏ ଗତ ଗୋଟିଏ । କୌଣସି ଗୋଟିକୁ ନିର୍ଦ୍ଦିଷ୍ଟ ବୋଲି କୁହାଯାଇପାରିବ ନାହିଁ । ଯେପରି ଭାରତର ଭୌଗୋଳିକ ପରିସୀମା ଅତି ବିସ୍ତୃତ, ସେହିପରି ତାର ଇତିହାସ, ମହାନ୍ ଆଦର୍ଶ ବିପୁଳ ଓ ଏହି ଭିତ୍ତିଭୂମି ଉପରେ ତାହା ପ୍ରତିଷ୍ଠିତ । ଏହା ଉପରେ ଏ ଦେଶ ପ୍ରଥମରୁ ଦଣ୍ଡାୟମାନ । ଯେ ନିଜକୁ ଜଣେ ଭାରତୀୟ ବୋଲି ପରିଚୟ ଦେବାକୁ ଚାହେଁ, ସେ ଏହି ସଂସ୍କୃତିର ଲକ୍ଷ୍ୟ ବୁଝିବା ଉଚିତ । ଏହା କୌଣସି ଗୋଟିଏ ଜାତି, ଗୋଟିଏ ଧର୍ମ ବା ଗୋଟିଏ ସମ୍ପ୍ରଦାୟଦ୍ୱାରା ଗଠିତ ନୁହେଁ । ଏହି ମାଟିରେ କାଳକ୍ରମେ ବହୁ ଲୋକଙ୍କର ଆଗମନ ଓ ବହୁ ଧର୍ମର ସମାବେଶରୁ ଭାରତୀୟ ପରମ୍ପରା ପରିବର୍ଦ୍ଧିତ ହୋଇଛି । ଏ ଦେଶ ସେଇ ମହାନ୍ ପରମ୍ପରା ଉପରେ ଅଧିଷ୍ଠିତ ।

ଇଣ୍ଡୋନେସିଆର ସଂସ୍କୃତିରେ ଭାରତୀୟ ସଂସ୍କୃତିର ପ୍ରଭାବ ସୁସ୍ପଷ୍ଟ । ସେମାନଙ୍କ ଭିତରୁ କେତେକ ଆଜି ବି ଶୁଭ କାମର ଆରମ୍ଭରେ ଗଣେଶ ଓ ସରସ୍ୱତୀଙ୍କୁ ପୂଜା କରନ୍ତି । 'ଅର୍ଜୁନ ବିବାହ' ସେଠିକାର ଲୋକପ୍ରିୟ ନାଟକ ।

କାମ୍ବୋଡ଼ିଆରେ ମଧ୍ୟ ଭାରତୀୟ ସଂସ୍କୃତି ଆଜି ପର୍ଯ୍ୟନ୍ତ ରହିଛି । କଥିତ ଅଛି, ବହୁଦିନ ତଳେ 'କୌଣ୍ଡିନ୍ୟ' ନାମରେ ଜଣେ ଦକ୍ଷିଣଭାରତୀୟ କାମ୍ବୋଡ଼ିଆର ରାଜକନ୍ୟାଙ୍କୁ ପରାସ୍ତ କରି ତାଙ୍କୁ ବିବାହ କରିଥିଲେ । ସେ ସେଠାରେ ବସତି ସ୍ଥାପନ କରି ତାଙ୍କ ବଂଶ ପ୍ରତିଷ୍ଠା କଲେ ।

× × × ×

ଖ୍ରୀଷ୍ଟପୂର୍ବ ୫୦୦ ବର୍ଷତଳେ ଇଜିପ୍ଟରେ ଗୋଟିଏ କୃଷ୍ଣ ମନ୍ଦିର ଥିଲା । ଭାରତୀୟ ସଂସ୍କୃତି ସୁଦୂରପ୍ରସାରୀ । ଅଶୋକ ତାଙ୍କର ଧର୍ମପ୍ରଚାରକମାନଙ୍କୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶମାନଙ୍କୁ ପଠାଇଥିଲେ । ମାନବିକ ସମ୍ବେଦନ ପୃଥିବୀର ସବୁ ସ୍ଥାନରେ ସମାନ । ପ୍ରକୃତ ଦାର୍ଶନିକର ମନ ଓ ସମତୁଲ ଦୃଷ୍ଟିଭଙ୍ଗୀ ନେଇ ଦେଖିଲେ ଜଣାଯିବ ଯେ, ପୃଥିବୀର ସବୁ ସ୍ଥାନର ଲୋକଙ୍କର ସମାନ ପ୍ରକାରର ଆବେଗ, ସମାନ କ୍ଷୁଧା, ସମାନ ଭାବ-ପ୍ରବଣତା ଓ ସମାନ ପ୍ରକାରର ପ୍ରବୃତ୍ତି ରହିଛି, ଯାହାକି ମଣିଷଜାତିକୁ ଏକ କରୁଛି ।

ବର୍ତ୍ତମାନ ପୃଥିବୀ ଏକତ୍ୱ ଆଡ଼କୁ ଗତି କରୁଛି । ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, ପରିବହନ ଓ ଯୋଗାଯୋଗ ଯୋଗୁଁ ପୃଥିବୀକୁ ଆଜି ଏକ କରିଦେବାକୁ ବସିଲାଣି । ତେବେ ବାହ୍ୟିକ ଓ ବୌଦ୍ଧିକ ଦୃଷ୍ଟିରୁ ପୃଥିବୀରେ ଏକତ୍ୱ ସ୍ଥାପିତ ହୋଇଥିଲେ ମଧ୍ୟ ରାଜନୈତିକ ଓ ଆର୍ଥିକ ଦୃଷ୍ଟିରୁ ସେ ସମତା ଆସିନାହିଁ । ଆଜି ଗୋଟାଏ ପ୍ରକାରର ଅନିଶ୍ଚିତତା ଯୋଗୁଁ ପୃଥିବୀକୁ ଗ୍ରାସ କରିଛି, କେହି ମୁକ୍ତ ବାତାବରଣ ମଧ୍ୟରେ ନାହାନ୍ତି । ଆମେ ଆଣବିକ ଅସ୍ତ୍ରଶସ୍ତ୍ର ଉତ୍ପାଦନ କରିବାରେ ଚରମକୁ ଯାଇଥିଲେ ମଧ୍ୟ ନୈତିକତା ଦଉରେ ଖୁବ୍ ତଳେ ରହିଛୁ । ସେଇଥିପାଇଁ ଆମ ଭିତରେ ଅବିଶ୍ୱାସ, ଭୟ, ଭରିରହିଛି । ଉପନିଷଦ ଯୁଗରୁ ବୁଦ୍ଧ, ଗାନ୍ଧି, ରାମକୃଷ୍ଣଙ୍କ ପର୍ଯ୍ୟନ୍ତ ଆମେ ଯେଉଁ ଆଦର୍ଶ ଯୋଗୁଁ ପୃଥିବୀରେ ପ୍ରଚାର କରୁଛୁ, ତା' ଉପରେ ବିଶ୍ୱାସ ସ୍ଥାପନ କରି ଆଗେଇପାରିଲେ ଆମେ ପୃଥିବୀକୁ ରକ୍ଷାକରିପାରିବା ।

ତୁମେ ନିଜର ଭ୍ରାନ୍ତ ଧାରଣାର ଊର୍ଦ୍ଧ୍ୱକୁ ଉଠିବାକୁ ଚେଷ୍ଟାକଲେ ସେଥିପାଇଁ ଉତ୍ସାହପ୍ରଦ ପରିବେଶ ନିଶ୍ଚୟ ମିଳିବ । ଗାନ୍ଧିଜୀ କହିଥିଲେ, "ସହଯୋଗବିହୀନ ପୃଥିବୀରେ ରହିବାକୁ ମୁଁ ଚାହେଁ ନାହିଁ ।" ଆଉ ମଧ୍ୟ ସେ କହିଥିଲେ, "ପତିତ ଓ ପରାଜିତ ଭାରତ ନିଜପାଇଁ କିମ୍ବା ପୃଥିବୀ ପାଇଁ କୌଣସି ଉପକାରରେ ଆସିପାରିବ ନାହିଁ । ଏକ ସ୍ୱାଧୀନ ଓ ପ୍ରବୁଦ୍ଧ ଭାରତ ନିଜର ତଥା ବିଶ୍ୱର ଉପକାର କରିପାରିବ । ମୁଁ ଏଥିପାଇଁ ଭାରତର ସ୍ୱାଧୀନତା ଚାହେଁ, ସମୟ ଆସିବ ଯେତେବେଳେ ଭାରତ ନିଜେ ମରି

ପୃଥିବୀକୁ ମୃତ୍ୟୁମୁଖରୁ ରକ୍ଷାକରିବ ।" ଏହି ଦୃଷ୍ଟିରୁ ଭାରତର ସ୍ଥିତି—ସେ କେବେହେଲେ ନୈତିକ ମୂଲ୍ୟଠାରୁ ପାର୍ଥିବ ସ୍ଥିତିକୁ ଉଚ୍ଚସ୍ଥାନ ଦେଇନାହିଁ । ଏପରିକି ଭାରତର ନେତାମାନେ ଓ ରାଜନୀତିଜ୍ଞମାନେ ଧାର୍ମିକ ବ୍ୟକ୍ତି ଅଟନ୍ତି । ଗାନ୍ଧି, ତିଲକ, ଶ୍ରୀ ଅରବିନ୍ଦ, ସ୍ୱାମୀ ବିବେକାନନ୍ଦ ଓ ରବୀନ୍ଦ୍ରନାଥ ପ୍ରଭୃତି ଏ ଶ୍ରେଣୀର ବ୍ୟକ୍ତି ଅଟନ୍ତି । ସେମାନେ ଆଜି ସାରା ପୃଥିବୀରେ ଏତେ ପ୍ରଖ୍ୟାତ ବ୍ୟକ୍ତି କାହିଁକି ? ରାଜନୈତିକ ବୁଦ୍ଧିମତ୍ତା ପାଇଁ ନୁହେଁ, ସାଧନା, ତପସ୍ୟା, ନିଷ୍ଠା, ବ୍ରତବିଧି ଓ ତ୍ୟାଗପୂତ ଜୀବନ ପାଇଁ ସେମାନେ ଖ୍ୟାତ । ସେଇମାନେ ଏସବୁ ଉଚ୍ଚ ଆଦର୍ଶର ଉଦାହରଣ । ନିଜ ଜୀବନରେ ସେମାନେ ଏହାକୁ କାର୍ଯ୍ୟରେ ପରିଣତ କରିଛନ୍ତି ।

ଭାରତ ଚିରକାଳ ସେଇମାନଙ୍କର ଆଦର୍ଶ ଉପରେ ପ୍ରତିଷ୍ଠିତ । ମାଧ୍ୟାକର୍ଷଣ ଶକ୍ତି ଯୋଗୁ ନୁହେଁ, ସାଧୁମାନଙ୍କର ତପସ୍ୟା ବଳରେ ଏ ପୃଥିବୀ ଆଜି ବଞ୍ଚିଛି । ଧନ ଆହରଣ କରୁଥିବା ବ୍ୟକ୍ତି ଓ ପାର୍ଥିବତାରେ ବୁଡ଼ିରହିଥିବା ବ୍ୟକ୍ତିମାନଙ୍କ ଯୋଗୁଁ ଏ ଦେଶ ବଞ୍ଚି ରହିନାହିଁ । ଯେଉଁ ଅଜସ୍ର ବ୍ୟକ୍ତି ଅଜଣା ଓ ଅଶୁଣା, ଯେଉଁମାନେ ଯନ୍ତ୍ରଣାଗ୍ରସ୍ତ ଓ ଦୁଃଖପୀଡ଼ିତ ଭିତରେ ଜର୍ଜରିତ, ସେମାନଙ୍କ ଆତ୍ମଶକ୍ତି ନେଇ ଏ ଦେଶ ବଞ୍ଚିଛି । ସେଇମାନେ ହିଁ ଦେଶର ମୂଳପିଣ୍ଡ । ସେଇମାନେ ଏ ଦେଶକୁ ଏପର୍ଯ୍ୟନ୍ତ ବଞ୍ଚାଇଛନ୍ତି ।

ଭାରତ କେବେହେଲେ ଭିନ୍ନ ଧର୍ମାବଲମ୍ବୀମାନଙ୍କ ପାଇଁ ଅସହିଷ୍ଣୁଭାବ ପୋଷଣ କରିନାହିଁ । ଭାରତବାସୀ ଇହୁଦି, ଖ୍ରୀଷ୍ଟିଆନ, ମୁସଲମାନ, ପାର୍ଶିଆନ—ଏ ସମସ୍ତଙ୍କୁ ଅଭିନନ୍ଦନ ଜଣାଇଛି । ଏହା ଅତି ଗର୍ବର ବିଷୟ । ଭାରତରେ ଏହି ଭିନ୍ନମତାବଲମ୍ବୀମାନେ ଗଭୀର ସୌହାର୍ଦ୍ଦ୍ୟ ମଧ୍ୟରେ କାଳାତିପାତ କରୁଛନ୍ତି । ତ୍ୟାଗ ଓ ବନ୍ଧୁତ୍ୱ ଭାରତର ଧର୍ମ । ଆମେ ନିଜକୁ ଭାରତୀୟ ବୋଲି କହିଲବେଳେ ଆମକୁ ମନେରଖିବାକୁ ହେବ ଯେ, ଭାରତ ଭୂମିରେ ଜନ୍ମଲାଭ କଲେ ପ୍ରକୃତ ଭାରତୀୟ ଗୁଣର ଆମେ ଅଧିକାରୀ ବୋଲି କହିପାରିବା ନାହିଁ । ଅନାଦିକାଳରୁ ଏ ଦେଶରେ ପ୍ରଚଳିତ ଦୃଷ୍ଟିକୋଣ, ବ୍ୟବହାର, ପ୍ରକୃତି, ଆଦର୍ଶ ଓ ଆଚରଣକୁ ଗ୍ରହଣ

କରିପାରିଲେ ନିଜକୁ ଭାରତୀୟ ବୋଲି ପରିଚୟ ଦିଆଯାଇପାରେ ।

ଯେଉଁମାନେ ଭାରତରୁ ବିଦେଶକୁ ଯାଇ ସେମାନଙ୍କର ଜୀବନ ଯାପନ କରୁଛନ୍ତି, ସେମାନେ ସେ ଦେଶକୁ ନିଜର ବୋଲି ଭାବିବା ଉଚିତ । ସେ ଦେଶର ଉନ୍ନତି ପାଇଁ ସେମାନଙ୍କୁ କାମ କରିବାକୁ ହେବ । ଯଦି କେହି ସେ ଦେଶକୁ ଯାଇ ଜୀବିକା ଅର୍ଜନ କରି ତାକୁ ନିଜର କରିନପାରିବ ତେବେ ଇଂରେଜମାନଙ୍କ ପ୍ରତି ଆମର ଯେଉଁ ପ୍ରକାରର ମନୋଭାବ ଥିଲା ସେହି ପ୍ରକାରର ଧାରଣା ତାଙ୍କ ପ୍ରତି ସେ ଦେଶବାସୀଙ୍କର ରହିବ । ଏ ପ୍ରକାର ମନୋଭାବ ଭଲ ନୁହେଁ ।

× × × ×

ବିଭିନ୍ନ ଧର୍ମାବଲମ୍ବୀଙ୍କ ମଧ୍ୟରେ ସହଯୋଗ ବୃଦ୍ଧି ଓ ପରସ୍ପର ମଧ୍ୟରେ କଳହରେ ପ୍ରବୃତ୍ତ ନହେବା ବର୍ତ୍ତମାନ ଯୁଗଧର୍ମରେ ପରିଣତ ହେଲଣି । ସେମାନେ ସମସ୍ତେ ଏକ ନିର୍ଦ୍ଦିଷ୍ଟ ସନ୍ଧାନ ପଥରେ ପଥିକ; କିନ୍ତୁ କୌଣସି ପ୍ରକାରର ଲାଭ ପାଇଁ ପ୍ରତିଦ୍ୱନ୍ଦ୍ୱୀ ନୁହନ୍ତି । ହୃଦୟ ଓ ମନର ମିଳନ ହିଁ ଆଜି ପୃଥିବୀର ଲକ୍ଷ୍ୟ । ଆଜି ପୃଥିବୀକୁ ଶରୀର ମିଳିଛି, ଆମକୁ ସେ ଶରୀରରେ ଆତ୍ମା ସଞ୍ଚାର କରିବାକୁ ହେବ; ବିବେକର ଉଦୟ କରିବାକୁ ହେବ । ଆମେ ଯଦି ପ୍ରକୃତିରେ ଭାରତୀୟ ତା'ହେଲେ ଆମେ ଏହି ନୈତିକ ଦାୟିତ୍ୱ ତୁଲାଇ ପାରିବା ।

ମୋର ଆଶା ଓ ବିନମ୍ର ପ୍ରାର୍ଥନା, ମହାନ୍ ବ୍ୟକ୍ତି ସବୁ ଏହି ଲକ୍ଷ୍ୟର ପରିପୂରଣ ପାଇଁ ଏକତ୍ରିତ ହୁଅନ୍ତୁ, ଏକତ୍ର କାର୍ଯ୍ୟ କରନ୍ତୁ ଓ ମାନବ ଜାତିର ଭବିଷ୍ୟତ ଲକ୍ଷ୍ୟ ପୂରଣ ଦିଗରେ ଅଗ୍ରସର ହୁଅନ୍ତୁ । ପୃଥିବୀ ଓ ଯୁଗର ଗତି ଆଜି ସେଇ ଆଡ଼କୁ । ଯଦି ସମ୍ପ୍ରତି ଘଟଣାବଳୀ ଅନୁଧ୍ୟାନ କରାଯିବ, ଏ ଯୁଗର ଗତିକୁ ପର୍ଯ୍ୟାଲୋଚନା କରାଯିବ, ସୃଷ୍ଟି ପ୍ରକ୍ରିୟାକୁ ପର୍ଯ୍ୟବେକ୍ଷଣ କରାଯିବ, ତା'ହେଲେ ଜଣାଯିବ ଯେ ଏହାହିଁ ଯୁଗରୁଚି ଓ ଈଶ୍ୱରଙ୍କର ଇଚ୍ଛା । ପୃଥିବୀ ମଣିଷଜାତି ପାଇଁ ଏପରି ଏକ ଆବାସସ୍ଥଳୀ ହେଉ, ଯେଉଁଠାରେ ମଣିଷ ମଣିଷ ଭିତରେ ବିଭେଦ ରହିଲେ ମଧ୍ୟ

ଧ୍ୱଂସର ପ୍ରଶ୍ନ ଉଠୁବ ନାହିଁ । ପ୍ରତ୍ୟେକେ ମଣିଷ ଜାତିର ଉନ୍ନତି ପାଇଁ ଏକତ୍ର କାର୍ଯ୍ୟ କରିବେ । ମୁଁ ଆଜି ଆମ ଦେଶବାସୀଙ୍କ ଭିତରେ ସେଇ ଭାରତୀୟ ଭାବ ଓ ଧାରଣା ଆଶା କରୁଛି ।

## ଶିକ୍ଷାର ଆଦର୍ଶ

୧୯୬୨ ମସିହା ଡିସେମ୍ବର ମାସ ପହିଲା ଦିନ ରାଷ୍ଟ୍ରପତି ରାଧାକୃଷ୍ଣନ୍ ପଞ୍ଜାବ ବିଶ୍ୱବିଦ୍ୟାଳୟର ଗାନ୍ଧିଭବନ ଉନ୍ମୋଚନ କରିବାକୁ ଯାଇ ଭାଷଣ ପ୍ରସଙ୍ଗରେ କହିଥିଲେ, "ନୈତିକ ଓ ଆଧ୍ୟାତ୍ମିକ ଦିଗରେ ତାଲିମ୍ ଦେବା ଶିକ୍ଷାର ଏକ ପ୍ରଧାନ ଅଙ୍ଗ । ବୁଦ୍ଧି ଓ ବିବେକକୁ ବହିଷ୍କାର କରିବା ଫଳରେ ଆଜି ପୃଥିବୀ ଦୁର୍ଗତିର ସମ୍ମୁଖୀନ ହୋଇଛି । ଗାନ୍ଧିଭବନ ପ୍ରତିଷ୍ଠା ଫଳରେ ଏହା ଆମକୁ ସର୍ବଦା ନୈତିକ ମୂଲ୍ୟ ବିଷୟରେ ମନେପକାଇ-ଦେବ । ଗାନ୍ଧିଙ୍କ ଲେଖାକୁ ପାଠକଲେ ତାହା ଆମର ଅଶେଷ ଉପକାରରେ ଆସିବ । ଯଦି ଛାତ୍ରମାନଙ୍କୁ କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟପଥରେ ଆଗେଇ ନିଆଯାଇପାରିବନାହିଁ, ତା'ହେଲେ ଶିକ୍ଷା ସେ କ୍ଷେତ୍ରରେ ପୂର୍ଣ୍ଣାଙ୍ଗ ନୁହେଁ । ମାନସିକ ଦାସତ୍ୱ, ଭ୍ରମାତ୍ମକ ଧାରଣା ଓ ଧର୍ମାନ୍ଧତାରୁ ମୁକ୍ତିଲାଭ କରି ସାହସୀ ହେବା ପାଇଁ ଛାତ୍ରମାନଙ୍କୁ ଗଢ଼ିବା ଉଚିତ ।

ଏହା ବ୍ୟତୀତ ସେ ଅନ୍ୟତ୍ର ଭାଷଣ ପ୍ରସଙ୍ଗରେ କହିଥିଲେ, "ବ୍ୟକ୍ତିର ମୁକ୍ତି ହିଁ ଶିକ୍ଷାର ଲକ୍ଷ୍ୟ । ଶିକ୍ଷାଦ୍ୱାରା ମଣିଷ ଶାଶ୍ୱତ ଜୀବନର ଅଧିକାରୀ ହୁଏ, ତା' ମଧ୍ୟରେ ସ୍ୱାଧୀନ ମନୋଭାବ ବିକଶିତ ହୁଏ । ଯୀଶୁଖ୍ରୀଷ୍ଟ କହିଛନ୍ତି, "ନିଜକୁ ଭ୍ରାନ୍ତଧାରଣାରୁ ମୁକ୍ତ କର, ଅନ୍ଧବିଶ୍ୱାସକୁ ଦୂରେଇ ରଖ, ଜାତିକୁ ସମ୍ପ୍ରଦାୟ ଭାବରୁ ଊର୍ଦ୍ଧ୍ୱରେ ରଖ, ତା'ହେଲେ ମାନସିକ ସ୍ୱାଧୀନତା ଓ ମହତ୍ତର ମନୋଭାବ ସୃଷ୍ଟି ହୋଇପାରିବ ।"

ଶିକ୍ଷାର ପ୍ରଥମ କାମ ହେଉଛି, ମଣିଷକୁ ମଣିଷ ରୂପରେ ଗଢ଼ିବା । କୌଣସି ଲୋକ ଦୁଃଖ ନିର୍ଯ୍ୟାତନା ମଧ୍ୟରେ ପ୍ରପୀଡ଼ିତ ହେଉଥିବାର ଦେଖିଲେ ତା'ର ସେବାପାଇଁ ଆଗେଇଯିବା ଉଚିତ । ତୁମେ ଯଦି

ପ୍ରକୃତରେ ହୃଦୟବାନ୍, ତୁମେ ଯଦି ପ୍ରକୃତରେ ଶିକ୍ଷାଲାଭ କରିଛ, ତୁମେ ଯଦି ମୁକ୍ତ, ଏ ସଂସାରର ପ୍ରତ୍ୟେକଙ୍କର ଦୁଃଖ-ଯନ୍ତ୍ରଣା ତୁମକୁ କ୍ଷୁବ୍ଧ କରିବ । ଅନ୍ୟର ଦୁଃଖକୁ ତୁମେ ନିଜର ବୋଲି ଭାବିବ । ଏହାହିଁ ହେଉଛି ଶିକ୍ଷାର ଲକ୍ଷ୍ୟ । ଶିକ୍ଷା ମନୁଷ୍ୟର ଆଚରଣକୁ ଜନୋଚିତ କରିବା ଦରକାର । ନିଜ ପ୍ରତି କଠୋର ହୁଅ; କିନ୍ତୁ ଅନ୍ୟ ପ୍ରତି କରୁଣା, କୋମଳ ହୁଅ । ନିଜକୁ ଉଚ୍ଚ ଭାବି ଅନ୍ୟକୁ ତୁଚ୍ଛ ମନେ କରନାହିଁ । ତୁମେ ଯଦି ତାଙ୍କ ଅବସ୍ଥାରେ ଆଆନ୍ତ ତେବେ ଆଉ ଅଧିକ କିଛି କରିପାରିନଥାନ୍ତ । ଆମେ ପ୍ରାୟ ଅଧିକାଂଶ ମଣିଷରୂପଧାରୀ ପଶୁ । ଶିକ୍ଷା ମଣିଷକୁ ମଣିଷ କରିପାରିଲେ ଏ ବିଶ୍ୱ ଏକ ଆନନ୍ଦଧାମରେ ପରିଣତ ହୋଇପାରିବ ।

---